# ଶ୍ରୀରାମ ରାସୋତ୍ସବ

ଭକ୍ତି-ଗ୍ରନ୍ଥ

ପଣ୍ଡିତ ନୀଳକଣ୍ଠ ରଥ ସଂକଳିତ

# SRIRAMA RASOTSABA

by

*Pandit* Niiakantha Rath *Sarma*

Published by

**The Students' Store**

Educational Publishers

BERHAMPUR

CUTTACK

# ସୂଚୀ

# ମୁଖବନ୍ଧ

**ଜୟତି ରଘୁବଂଶତିଲକଃ କୌଶଲ୍ୟା ହୃଦୟନନ୍ଦନୋ ରାମଃ**
**ଦଶବଦନ-ନିଧନକାରୀ ଦାଶରଥିଃ ପୁଣ୍ଡରୀକାକ୍ଷଃ ।**

'ଶ୍ରୀରାମ ରାସୋତ୍ସବ' ବାସ୍ତବରେ ଶ୍ରୀରାମମତାବଲମ୍ବୀମାନଙ୍କ ହୃଦୟରେ ପରିବର୍ତ୍ତନ ସୃଷ୍ଟି କରି ପାରେ । ଯେଉଁ ଭକ୍ତ ବା ସାଧୁମାନେ ରାମଭାବ ଓ କୃଷ୍ଣଭାବକୁ ଏକ ମହାଭାବ ବୋଲି ଜ୍ଞାନ କରନ୍ତି, ଆଉ ସେହି ଦିବ୍ୟ-ରସରେ ଅବଗାହନ କରି ପରମାନନ୍ଦ ଭୋଗ କରିବାକୁ ଇଚ୍ଛୁକ ହୋଇ ଥାନ୍ତି, ସେମାନଙ୍କ ମନରେ କେବେ ହେଲେ ସନ୍ଦେହର ଅବକାଶ ରହିବ ନାହିଁ ବୋଲି ମୋର ଧାରଣା ।

ଏ ଗ୍ରନ୍ଥର ଉତ୍ପତ୍ତି ଓ ପ୍ରମାଣ ଇତ୍ୟାଦି ବିଷୟରେ ଅଧିକ କଥା ଲେଖିବା ଅନାବଶ୍ୟକ । ତଥାପି ଭକ୍ତ ବତ୍ସଳ ପରମାତ୍ମା ଶ୍ରୀରାମଙ୍କ ଦିବ୍ୟ ଆଦେଶ ବଳରେହିଁ ଏହା ଲିଖିତ ଓ ତାଙ୍କରି ଅପାର କରୁଣା ବଳରୁ ଆଜି ରାମ ଭକ୍ତମାନଙ୍କ ଦୃଷ୍ଟିରେ ଏ ଗ୍ରନ୍ଥ ଅନାଦୃତ ହେବ ନାହିଁ ବୋଲି ଆଶା ।

ଗ୍ରନ୍ଥ ଲିଖିତ ହେବା ସଙ୍ଗେ ସଙ୍ଗେ ଯେତେବେଳେ ରଘୁନାଥ ମନ୍ଦିର ବେଢ଼ାରେ ଏହାର ପାରାୟଣ ଓ ଅଭିନୟର ସୂତ୍ରପାତ ହୁଏ, ସେତେବେଳର ଅପମାନ, ଲାଞ୍ଛନା ଇତ୍ୟାଦି ମନେ ପଡିଲେ ଆଜି ହୃତ୍କମ୍ପ ଜାତ ହେଉଛି । ମୋର ସଙ୍ଗୀ, ଛାତ୍ର ଓ ସହାନୁଭୂତିକାରୀଗଣଙ୍କର ଅପୂର୍ବ ସାହାଯ୍ୟ ସେତେବେଳେ ମୋତେ ଯେ ଉନ୍ମାଦନା ଓ ଉତ୍ସାହ ଦେଇ ଏହାକୁ କାର୍ଯ୍ୟକାରୀ କରିଥିଲା, ତାହା ଭାବିଲେ ଯୁଗପତ୍ ବିସ୍ମୟ ଓ

ଆନନ୍ଦରେ ହୃଦୟ ଅଭିଭୂତ ହୋଇ ପଡ଼େ । ଏଥିଲାଗି ସେମାନଙ୍କୁ ମୋର ଗଭୀର କୃତଜ୍ଞତା ଜଣାଇବା ବ୍ୟତୀତ ଆଉ କ'ଣ ଅଛି ?

ସର୍ବଶେଷରେ ଭଗୀରଥି ମିଶ୍ର ସାହିତ୍ୟାଚାର୍ଯ୍ୟ, ଦାମୋଦର ମିଶ୍ର କାବ୍ୟତୀର୍ଥ, ସଦାଶିବ ମହାପାତ୍ର କାବ୍ୟତୀର୍ଥ ଓ ବୈଦ୍ୟନାଥ ଆଚାର୍ଯ୍ୟ ସାହିତ୍ୟ-ବିଦ୍ୟାପ୍ରବୀଣ ପ୍ରଭୃତି ପଣ୍ଡିତମାନଙ୍କଠାରୁ ସଂଶୋଧନ ଓ ସଂଯୋଜନ ଲାଗି ନାନା ପ୍ରକାର ଉପଦେଶ ଓ ସୂଚନା ଲାଭ କରିଥିବାରୁ ସେମାନଙ୍କ ସମୀପରେ ମୁଁ ନତ ମସ୍ତକ । ଉପର୍ଯ୍ୟୁକ୍ତ ପଣ୍ଡିତ ମଣ୍ଡଳୀଙ୍କ ସାହାଯ୍ୟ ବ୍ୟତୀତ ଏ ଗ୍ରନ୍ଥଟି ଯେ, ପରିସମାପ୍ତି ହୋଇ ପାରିଥାନ୍ତା, ତାହା ମୁଁ ସାହସ ସହିତ କହି ପାରୁ ନାହିଁ । ଅନନ୍ତର—

ରାମଭକ୍ତ ଅନୁରକ୍ତ ଯେତେ ସାଧୁଜନ
ତାଙ୍କ ପଦେ ଭକ୍ତିମନ୍ଦେ ପଶୁଛି ଶରଣ । ଇତି ।

| | |
|---|---|
| ଶ୍ରୀ ରଘୁନାଥ ମନ୍ଦିର<br>ପଦ୍ମନାଭପୁର ଶାସନ—ବାଁଙ୍କୀ<br>ଶ୍ରାବଣ ପୂର୍ଣ୍ଣିମୀ<br>୧୯୩୭ | ବିନୀତ<br>**ଗ୍ରନ୍ଥକାର** |

## ସମର୍ପଣ

ରାମାୟ ରାମଚନ୍ଦ୍ରାୟ ରାମଭଦ୍ରାୟ ବେଧସେ
ନାଥାୟ ରଘୁନାଥାୟ ସୀତାୟାଃ ପତୟେ ନମଃ ।

# ଶ୍ରୀରାମ ରସୋତ୍ସବ

## ମଙ୍ଗଳ ଆଳତୀ

୧

(ଗୋପୀଏ ବନ୍ଦାନ୍ତି ବନମାଳୀଙ୍କ, ଅର୍ଘ୍ୟଥାଳୀଙ୍କ ପ୍ରତି)

ରଘୁପତିଙ୍କ, କର କର କର୍ପୂର ଆଳତୀକି । ୦

ରୂପ ମଦନ-ନନ୍ଦନ ଅଶେଷ ସୁଖ ସଦନ

ଦୈତ୍ୟ-ପଦ୍ମବନ-ନାଶାପତି କି । ୧

ବିକ୍ରମ-କେଶରୀ ଜାଣି ଅଦ୍ୱା ସେ ଲାବଣ୍ୟଖଣି

ଗଲେ ରତ୍ନମଣି ଶୋଭି ଅତି କି । ୨

ବାଞ୍ଛ ଅଳିଠ ଭ୍ରମର ନାନା ସୁମନ ସମ୍ଭାର

ନଉଛାଳି କର ଦିବ୍ୟ ମୂର୍ତ୍ତିକି । ୩

ଯା'ର ଗୁଣ ଅପ୍ରମିତ ନଜାଣିଛ ପୁରୁହୂତ

ବ୍ରହ୍ମା ଶିବ ହେଲେ ଭୋଳ ମତି କି । ୪

ଗାଅ ତାଙ୍କ ଯଶ ରାଶି ନବ ପ୍ରେମାନନ୍ଦେ ଭାସି

କହେ ନୀଳକଣ୍ଠ ଏ ବିନତିକି । ୫

୨

## ଚତୁସ୍ପଦୀ ବୃତ୍ତ

ଅଭିରାମ ରୂପ ରାମ ସୀତା ଦେବୀ ପତିଙ୍କ
ସୁମଙ୍ଗଳେ ଶୁଭବେଳେ କରିବା ଆଳତୀଙ୍କ । ୦

ନବ ଦୂର୍ବାଦଳ ଅଙ୍ଗ ଜିଣେ ରତିପତିଙ୍କ
ନଉଁଛନ୍ତି କରି ସେହୁ ସୁମୋହନ ମୂର୍ତ୍ତିଙ୍କ । ୧

ସୁଗନ୍ଧ ସୁମନେ ନାନା ମାଳ ଉର କତିଙ୍କ
ଶ୍ରୀକର୍ପୂର ରଜ ବୋଲି ସୁବିଶାଳ ଲଲାଟିଙ୍କ । ୨

ଧରି ଆଲଟ ଚାମର ଯତନରେ ଅତିଙ୍କ
ସୁଗନ୍ଧର ଗୁଣ ବେଗେ କରୁ ଶୂନ୍ୟେ ଗତିଙ୍କ । ୩

ବିଜେ କର ରଘୁବର ଧେନ୍ନା ଏ ବିନତିଙ୍କ
ପଦତଳେ କୁତୂହଳେ ନୀଳକଣ୍ଠ ମତିଙ୍କ । ୪

## ଅଧିବାସ

### ଶ୍ଳୋକଃ

**ରମ୍ଭା ପାଦପ ପୂର୍ଣ୍ଣକୁମ୍ଭ ସହିତ ଶ୍ଚନ୍ଦ୍ରାତପାଡ଼ମ୍ବରୈଃ
ସଂଲଗ୍ନଃ ପ୍ରଦୀପାବଳୀ ସୁରୁଚିରୋ ମାଙ୍ଗଲ୍ୟ ଦ୍ରବ୍ୟାନ୍ୱିତଃ ।
ନାନା ବାଦ୍ୟ କଦମ୍ବକୈ ର୍ମୁଖରିତ ସ୍ତନ୍ମଣ୍ଡପୋ ରାଜତେ
ଶ୍ରୀରାମୋ କୁରୁତେଽଧିବାସ ମଜନଂ ଯନ୍ମଣ୍ଡପେ ସନ୍ତତମ୍ ।**

## ଖର୍ବ

ଅଧିବାସ କରେ ରାସ ରଘୁକୁଳ ମଣି
ମଙ୍ଗଳର ଆଡମ୍ବର ଚତୁର୍ଦ୍ଦିଶେ ପୁଣି ହେ । ୧

ସୁମଣ୍ଡପ ଚନ୍ଦ୍ରାତପ ଠାଣି ତଥି ପରେ
ଗୁଆ ଘୃତର ପ୍ରଦୀପ ଜଳେ ନିରନ୍ତରେ ହେ । ୨

ଚତୁର୍ଦ୍ଦିଗେ ଶୋଭା ଦିଶେ ରମ୍ଭାତରୁ ଗୁଚ୍ଛ
କା ଅରମ୍ଭ ଦବ୍ୟ କୁମ୍ଭ ଜଳେ ପୂର୍ଣ୍ଣ କରି ହେ । ୩

ହରଷିତ ସେହି ପୀତ ଦୁକୂଳ ସରଗେ
ଦୂର୍ବାଦଳ ଯେ ତଣ୍ଡୁଳ ବଦରୀ ପଲ୍ଲବେ ହେ । ୪

କୁମ୍ଭପରେ ସବାଧିରେ ସ୍ଥାପି ଚୂତଡାଳ
ସ୍ୱପଦ୍ମ ଲିଖିତ ପୁଣି ତହିଁ ନାରିକେଳ ହେ । ୫

ଦଧି ଦୁଗ୍ଧ ଘୃତ ପଞ୍ଚାମୃତର ଯେ ବିଧି
ଭକ୍ତଗଣେ ମୋଦ ମନେ ଚିନ୍ତ କୃପାନିଧି ହେ । ୬

ଶୁଭେ ଜୟ ରଘୁରାୟ ମଙ୍ଗଳ ଆରମ୍ଭେ
ହରି ବୋଲ ହୁଳହୁଳି ଦିଅନ୍ତି ସରବେ ହେ । ୭

ଘନ ଘୋଷେ ମନତୋଷେ ନାନା ବାଦ୍ୟ ବାଜେ
ଅଧିବାସ କରେ ଈଶ ସୁମଙ୍ଗଳ ସାଜେ ହେ । ୮

ବାଜେ ଖୋଳ କରତାଳ ମଙ୍ଗଳ-ମହୁରୀ
ନୀଳ ତୋଷ ଅଧିବାସ ରଘୁଈଶ ସାରି ହେ । ୯

## ନମସ୍କ୍ରିୟା

ଶ୍ଳୋକଃ

**ନମାମି ନୈମିଷାରଣ୍ୟଂ ମୁନୀନ୍ଦ୍ରବୃନ୍ଦସେବିତଂ**
**ଭବାନୀ ଶଙ୍କରୌ ବନ୍ଦେ ପୁରାଣ ପୁସ୍ତକଂ ତଥା ।**

ଖଣ୍ଡ

ପୁରାଣ ବେଦ ଧ୍ୱନିରେ ସଦା ମୁଖରିତ
ଋଷି-ସେବିତ ନୈମିଷ ବନେ ପ୍ରଣମିତ ହେ । ୧

ମହାତପା ଜିତେନ୍ଦ୍ରିୟ ଅଚଳ ସଂଯମୀ
ଋଷିଗଣ ପଦେ ଭକ୍ତିଭରେ ପ୍ରଣମାମି ହେ । ୨

ନମସ୍ତେ ପୁରାଣ ଭାଗବତ ରାମାୟଣ
ବକ୍ତାହର ଶ୍ରୋତା ଗୌରୀ-ପଙ୍କଜ-ଚରଣ ହେ । ୩

ଧନ୍ୟ ସେହି ହୋମ ବେଦୀ ମୃଗ ମୃଗୀଗଣ
ନିତ୍ୟ ହରି ନାମାମୃତ କରୁଛନ୍ତି ପାନ ହେ । ୪

ନଜାଣେ ଭକତ ମୁହିଁ ଅଳ୍ପ ଜ୍ଞାନ ହୀନ
ଅବିରଳ ଭାବେ ନୀଳକଣ୍ଠ-ସେହି ସ୍ଥାନ ହେ । ୫

---

ଶ୍ଳୋକଃ

**କୂଜନ୍ତଂ ରାମରାମେତି ମଧୁରଂ ମଧୁରାକ୍ଷରଂ**
**ଆରୁହ୍ୟ କବିତା ଶାଖାଂ ବନ୍ଦେ ବାଲ୍ମୀକି କୋକିଳମ୍ ।୩**

## ଖଟ୍ଟ

ରାମାୟଣ ମହାଗ୍ରନ୍ଥ କି ସେ ଚୂତ ତରୁ
ଆଖ୍ୟାନ କବିତା ଶାଖା ସଦା କାଳେ ଗୁରୁ ହେ । ୧
ରାମ ନାମ ବର୍ଣ୍ଣଦ୍ୱୟ ମଧୁର ଅସ୍ବାଦ
ସୁପକ୍ୱ ରସାଳ ରୂପେ ଦଶଇ ବିଶଦ ହେ । ୨
ସେ କବିତା-ଶାଖେ ବସି ବାଲ୍ମୀକି କୋକିଳ
ଅଛନ୍ତି ପଞ୍ଚମ ତାନେ ଗୀତ ଅବିକଳ ହେ । ୩
ସେହି ପ୍ରେମ-ଗାଥା-ସିନ୍ଧୁ-ତରଙ୍ଗ-ରଙ୍ଗରେ
ଭସାଇଲେ ନର ନାରୀ କାଠ ପତଙ୍ଗରେ ହେ । ୪
କମଣ୍ଡଳ ଜଟାଜାଳ ବିଭୂତି-ମଣ୍ଡିତ
ବନ୍ଦଇ ବାଲ୍ମୀକି ଗୁଣବନ୍ତ ସୁପଣ୍ଡିତ ହେ । ୫
ଯାର ତେଜ ଶତ ସୂର୍ଯ୍ୟ କିରଣୁ ଅଧିକ
ପାପ ତମ ନାଶେ ଯେମ ଶକ୍ତ ପ୍ରକାଶକ ହେ । ୬
ଅହେ କୃପାମୟ ଆଦ କବି ଚୂଡ଼ାମଣି
ଦୟାକର, ଦୀନ ହୀନ ନୀଳକଣ୍ଠ ଭଣି ହେ । ୭

—❀—

### ଶ୍ଳୋକଃ

**ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀଃ ସମାଃ**
**ଯତ୍ କ୍ରୌଞ୍ଚ ମିଥୁନାଦେକଂ ମବଧୀଃ କାମ ମୋହିତମ୍ ।୪**

ଖଣ୍ଡ

ବାଲ୍ମୀକି ଆଶ୍ରମ ବନ କରଇ ଧଉତ
ସ୍ୱଚ୍ଛନୀର ସୁଗମ୍ଭୀର ତମସା ନିରତ ହେ । ୧

ତାରି ତଟେ ଧନେ ଋଷି ବାଲ୍ମୀକି ହରଷେ
ଭ୍ରମୁ ଭ୍ରମୁ ତରୁଶାଖେ ଦେଖିଲେ ହରଷେ ହେ । ୨

ନିଷାଦ ବିଷାଦ ନୋହି ଛାଡି ଦେଲା ଶର
କାମ ମୋହିତ ସେ କ୍ରୌଞ୍ଚ ଦମ୍ପତୀ ଉପର ହେ । ୩

ପ୍ରାଣ ଛଟପଟ ହୋଇ ପଡିଗଲା ତଳେ
କାନ୍ଦିଲା ପକ୍ଷିଣୀ ସ୍ୱାମୀ ଦଶାରେ ବିକଳେ ହେ । ୪

କରୁଣା ସାଗର ମୁନି ହୃଦ ଗଲା ଟଳି
ନିଷାଦରେ ବିଷାଦରେ କହିଲେ ଏଭଳି ହେ । ୫

ଧିକ ବ୍ୟାଧ ଧିକ ତୋର ବିବେକ ମମତା
ବଧି ଏ କ୍ରୌଞ୍ଚ ଦମ୍ପତି ପାପ ଲଭୁ ବୃଥା ହେ । ୬ ।

ଅକୁଳିତ ମୁନିବର କହି ଏହି ବାକ୍ୟ
ଶୋକରୁ ଜାତ ଏ ବାଣୀ ଖ୍ୟାତ ହେଲା ଶ୍ଳୋକ ହେ । ୭

ସେହି ଶ୍ଳୋକେ ଗାଥାମୟ କଲ ରାମାୟଣ
ଯୋଗେଶ୍ୱର ରଘୁନାଥ ଚରିତ ଲିଖନ ହେ । ୮

ସାମବେଦ ରମ୍ୟ ପଦ-ସିନ୍ଧୁରୁ ଏ ଜାତ
ମନୋରମ ଏ ଅଖ୍ୟାନ କି ସେ ସୁଧାବତ ହେ । ୯

ସେ ବାଲ୍ମୀକି ବେଦବ୍ୟାସ ଆଦ ଋଷିଗଣେ
ସୁମରଣ ନିଶିଦିନ ନୀଲକଣ୍ଠ ଭଣେ ହେ । ୧୦

—※—

## ମଙ୍ଗଳାଚରଣ

## ଶ୍ରୀଗୁରୁ ବନ୍ଦନା

ଶ୍ଲୋକଃ

**ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଳାକୟା**
**ଚକ୍ଷୁରୁନ୍ମିଳିତଂ ଯେନ ତସ୍ମୈ ଶ୍ରୀଗୁରୁବେ ନମଃ ।୫**

ପୟାର

ଗୁରୁ ବ୍ରହ୍ମା ଗୁରୁ ବିଷ୍ଣୁ ଗୁରୁ ମହେଶ୍ୱର
ଗୁରୁ ମୋ ପରମ ପୂଜ୍ୟ ସଦା ନିର୍ବିକାର ହେ । ୧
ଗୁରୁ ପଦ ପୂଜା ଫଳେ ଚତୁର୍ବର୍ଗ ମିଳେ
ଗୁରୁ ପଦରଜ ଶିରେ ବହ କୁତୁହଳେ ହେ । ୨
ଜ୍ଞାନାଞ୍ଜନ-ଶଳାକାରେ ଯେଉଁ ମହାଶୟ
ଅଜ୍ଞାନ-ତିମିର-ରାଶି କରି ଦେଲେ କ୍ଷୟ ହେ । ୩
ଫିଟିଲା ପାଗଳ ତୋର ଜ୍ଞାନର ନୟନ
ଏବଂଭୂତ ଗୁରୁ ପଦେ କର ତୁ ପ୍ରଣାମ ହେ । ୪
ଶିକ୍ଷା ଦୀକ୍ଷା ଜନ୍ମଦାତା ଏ ଗୁରୁ ପ୍ରଧାନ
ତାଙ୍କ କୃପା ବିନେ କିଛି ନୁହଇ ସାଧନ ହେ । ୫
ଦୟାକର ଗୁରୁଦେବ ଅକିଞ୍ଚନ ଦାସେ
ଅବିରଳେ ପଦତଳେ ନୀଳକଣ୍ଠ ବସେ ହେ । ୬

ଚୂହା

ଅହେ ଗୁରୁ ଦେବ କୃପାକର
ଦୀନ ହୀନ ଏ ପଦ-କିଙ୍କର । ୧

ତୁମ୍ଭ ବିନେ ମୋର ଗତି ନାହିଁ
ଦୟା କର ନୀଳକଣ୍ଠ କହ୍ନୁ । ୨

—※—

## ଶ୍ରୀ ଗଣେଶ ବନ୍ଦନା

ଶ୍ଳୋକଃ

**ଖର୍ବଂ ସ୍ଥୂଲତନୁଂ ଗଜେନ୍ଦ୍ର ବଦନଂ ଲମ୍ବୋଦରଂ ସୁନ୍ଦରଂ**
**ପ୍ରସ୍ୟନ୍ଦନ୍ ମଧୁଗନ୍ଧ ଲୁବ୍ଧ ମଧୁପ ବ୍ୟାଲୋଲ ଗଣ୍ଡସ୍ଥଳମ୍**
**ଦନ୍ତାଘାତ ବିଦାରିତାରିରୁଧିରଂ ସିନ୍ଦୂର ଶୋଭାକରଂ**
**ବନ୍ଦେ ଶୈଲସୁତାସୁତଂ ଗଣପତିଂ ସିଦ୍ଧିପ୍ରଦଂ କାମଦମ୍ ।୧**

ପୟାର

ଖର୍ବ ସ୍ଥୁଳତନୁ ପୁଣି ଗଜେନ୍ଦ୍ର ବଦନ
ହେ ଲମ୍ବୋଦର ସୁନ୍ଦର ପାର୍ବତୀ-ନନ୍ଦନ ହେ । ୧

ଦନ୍ତାଘାତେ ବିଦାରିତ ଅରିର ରୁଧିର
କାମ ସିଦ୍ଧି ପ୍ରଦାୟକ କପୋଳେ ସିନ୍ଦୂର ହେ । ୨

ମଧୁଗନ୍ଧେ ନିତ୍ୟଲୁବ୍ଧ ଲୋଳ ଗଣ୍ଡସ୍ଥଳ
ବିନାୟକ ବିଘ୍ନରାଜ ଶ୍ରୀଅଙ୍ଗ ସୁଢଳ ହେ । ୩

ମୂଷିକ ବାହନ ଅଟ ବିଦ୍ୟା ବୁଦ୍ଧି ଦାତା
ଦୟାକର ବିଘ୍ନହର ପଦ ମୋର ଶରଣ୍ଯା ହେ । ୪

ଶିରେ ସପ୍ତ ଶାଖାବଳୀ ମୁକୁଟ ବିରାଜେ
ପୟରେ ନୁପୁର ପୁଣି ରୁଣୁଝୁଣୁ ବାଜେ ହେ । ୫

ଅଗ୍ରପୂଜ୍ୟ ଦେବରାଜ ତୁ ଅପାର କାନ୍ତି
ଜ୍ଞାନମୟ ମୃତ୍ୟୁଞ୍ଜୟ ତନୟ କୃପାନ୍ତି ହେ ।୬।
ଦୟା ହେଉ ମହାବାହୁ କର ଯୋଡ଼େ ଦୀନ
ରାମ ରାସୋତ୍ସବ ଗାଥା କରିବ ବର୍ଣ୍ଣନ ହେ ।୭।
ଅପ୍ରକଟକୁ ପ୍ରକଟ କରିବାକୁ ଆଶ
କୁତୂହଳେ ପଦତଳେ ନୀଳକଣ୍ଠ ଦାସ ହେ ।୮।

ଚୁହା

ଗଜାନନ ଅହେ ଲମ୍ବୋଦର
ସ୍ଥୂଳତନୁ କପୋଲେ ସିନ୍ଦୂର ।
ପାଶାଙ୍କୁଶ ଶୋଭେ ଚତୁର୍ଭୁଜ
ଦୟାକର ମୋତେ ବିଘ୍ନରାଜ ।

## ଶ୍ରୀ ଶ୍ରୀରାମ ବନ୍ଦନା

ଶ୍ଳୋକଃ

**ସ୍ଥିତସ୍ତ୍ରେତାୟାଂ ଯୋଽସୌ ଜିତରତିପତିକୋଟିବିଭବ**
**ସ୍ତଥା ନିର୍ବିକାରଃ ସତତପରମାନନ୍ଦହୃଦୟଃ**
**ଅଜୋ ନିତ୍ୟତସ୍ମୈ ଜନକତନୟାସକ୍ତମନସେ**
**ପ୍ରଣାମୋ ମେ ଭୂୟାଦ୍ରସମୟକଥାଲେଖନବତଃ ।୧**

ଖର୍ବ

ବନ୍ଦେ ମରକତ କାନ୍ତି ଶ୍ୟାମଳ ସୁନ୍ଦର
ରଘୁନାଥ ନିତ୍ୟ ଦରହସିତ ଅଧର ହେ ।୧।

କୋଟିଏ ମଦନ ଗୋଟି ହେଲେ ରୂପ ଶୋଭା
ପଟାନ୍ତର ନୁହେ ସ୍ଥିର ତନୁକୁ ସର୍ବଦା ହେ ।୨।
ପରମ ଆନନ୍ଦ ନିତ୍ୟ ପ୍ରେମ ଅବତାର
ହେ ଆଦ୍ୟ କାରଣ ସନାତନ ନିର୍ବିକାର ହେ ।୩।
ବୀଣା ତାନେ ପ୍ରେମମନେ ଲୟ ତାନ ଧରି
ଗାଉ ଗୀତ ସାରସ୍ୱତ ବାଣୀ ବାକ୍ୟେଶ୍ୱରୀ ହେ ।୪।
କମଳ ନୟନୁ ପ୍ରେମ ଅଶ୍ରୁ ପଡେ ଝରି
ମୂକ ହୁଏ ବେଦପତି ଚତୁର୍ମୁଖଧାରୀ ହେ ।୫।
ରସରାଜ ରୂପ ତବ ଭବେ କାଳେ କାଳେ
ଧର୍ମରକ୍ଷା ପାଇଁ ଈଶ ଏ ମହୀମଣ୍ଡଳେ ହେ ।୬।
ନିତ୍ୟସ୍ଥଳେ ନିତ୍ୟବାସୀ ନାୟିକା ଗହଣେ
ମନୋରମ ରାସଗାଥା ପ୍ରକାଶୁ ଆପଣେ ହେ ।୭।
ଅତି ଅପ୍ରକଟ ଲୀଳା କେ କରିବ ଅନ୍ତ
ମଦନ ନନ୍ଦନ ରୂପ ଚୋର ସୀତାକାନ୍ତ ହେ ।୮।
ବ୍ରହ୍ମମୂର୍ତ୍ତି ବ୍ରହ୍ମବାଦ୍ୟ ତୋହରେ ସାଧିତ
ମାୟାଧର ତୋ ମହିମା ତୋତେ ହିଁ ବିଦିତ ହେ ।୯।
ଜ୍ଞାନହୀନ ନର ସ୍ଥିର ତୋ କୀର୍ତ୍ତି ବର୍ଣ୍ଣନେ
ବାମନର ଶଶଧର ଧରିବା ସମାନେ ହେ ।୧୦।
ଅବର୍ଣ୍ଣିତ ରୂପ ରେଖ କି ବର୍ଣ୍ଣିବ ହୀନ
ଦୟାକର ହେ କିଶୋର ଶ୍ରୀରଘୁନନ୍ଦନ ହେ ।୧୧।
ରାସୋତ୍ସବ ଅଭିନବ ସରଯୂର ତୀରେ
ଅଷ୍ଟସଖି ରାସେଶ୍ୱରୀ ଜାନକୀ ସଙ୍ଗରେ ହେ ।୧୨।
ବିବିଧ ବିନୋଦ ଲୀଳା କରିବି ବର୍ଣ୍ଣନ
ଦୟାକର ରସସାର ମୂରତି ସୁମନ ହେ ।୧୩।

ଅହେ ସାଧୁ ଜ୍ଞାନମୟ ବୃଷ୍ଟ ଲଙ୍ଗ ଜନେ
ଶରଣ ମାଗୁଛୁ ନୀଳକଣ୍ଠ ମୋଦମନେ ହେ ।୧୪।
କୃପାମୟୀ ରଘୁରାୟ ଶ୍ରୀମତୀ ଜାନକୀ
ପଦସେବା ବିନା ଅବା କି ଅଛୁ ଆନ କି ହେ ।୧୫।

ଊହା

ଅହେ ରଘୁନାଥ ଗୃପଧର
ରସରାଜ ମୂର୍ତ୍ତି ମନୋହର ।୧।
ମୋହନ ବିପଞ୍ଚି ନାଦକାରୀ
ମୋହିଲ ସରଯୂକୂଳେ ନାରୀ ।୨।
ବାସନ୍ତିକ ରସୋତ୍ସବ ଲୀଳା
ପୂର୍ଣ୍ଣ କର ଦଶରଥବଳା ।୩।

## ଶ୍ରୀ ସୀତା ବନ୍ଦନା

ଶ୍ଳୋକଃ

**ଜନକସ୍ୟାତ୍ମଜାଂ ଦେବୀଂ ଶ୍ରୀରାମପ୍ରିୟବଲ୍ଲଭାଂ**
**ତପ୍ତକାଞ୍ଚନଗୌରାଙ୍ଗୀଂ ବନ୍ଦେ ସୀତାଂ ମନୋହରାଂ ।୮**

ଖର୍ବ

ବନ୍ଦେ ରାମ ରସେଶ୍ୱରୀ ଜନକ ଦୁହିତା
ତପ୍ତକାଞ୍ଚନ ଗୌରାଙ୍ଗୀ ସୁଲକ୍ଷଣୀ ସୀତା ଗୋ ।୧।
ଶ୍ରୀରାମ ପ୍ରିୟବଲ୍ଲଭୀ ପ୍ରେମଭକ୍ତି ଯୁତା
କାମକଳା ସୁନିପୁଣା ସୁରସ ପଣ୍ଡିତା ଗୋ ।୨।

ଅଯୋନି ସମ୍ଭୂତା ଦେବ ! ପଦ୍ମଦଳ ନେତ୍ରା
ମଦନ ମୋହନ ରାମ ରସସିନ୍ଧୁ ଗାତ୍ରା ଗୋ ।୩।
କମ୍ବୁକଣ୍ଠେ ବିରାଜିତ ନାନାରତ୍ନ ହାର
କୁଚ-ଶମ୍ଭୁ-ଶିରେ କି ସେ ସ୍ୱର୍ଗ-ଗଙ୍ଗାଧାର ଗୋ ।୪।
ସୁପତନି ଗୋ ଜନନି ! ଶ୍ରୀଅଙ୍ଗେ ଜଡିତ
ରୂପରାଶି କେ ଭରସି ପାରିବ ବର୍ଣ୍ଣିତ ଗୋ ।୫।
ମୃଣାଳରୁ ଅତିରୁଚିରୁ ବାହୁର ଗଠଣି
ତଳନାସେ ସୁପ୍ରକାଶେ ଅଳଙ୍କାର ମାନ ଗୋ ।୬।
ପଦରେ ଝୁଣ୍ଟିଆ କିସେ ମଦନ-ଖୁଣ୍ଟିଆ
ଭକ୍ତିମୟୀ ପ୍ରେମମୟୀ ତୁହି ରାମପ୍ରିୟା ଗୋ ।୭।
ଯୋଗମାୟା ରୂପେ ଜାତ ତୁହି ମାୟାବତୀ
ମାୟାଧର ରଘୁନାଥ ହୃଦୟ ଭାବିନୀ ଗୋ ।୮।
ନିତ୍ୟସ୍ଥଳ ରାସକ୍ରୀଡ଼ା ସରୟୂ-ପୁଳିନେ
କଲ ସ୍ଥିତ ରଘୁନାଥ ସଙ୍ଗେ ନିକାଞ୍ଚନେ ଗୋ ।୯।
ସେହି ସୁମଧୁର ଗାଥା କରିବ ବର୍ଣ୍ଣନ
ଦୟାକର ନୀଳକଣ୍ଠ ଶ୍ରୀପଦେ ଶରଣ ଗୋ ।୧୦।

ଦୁହା

କୃପାମୟୀ ପଦେ ଦାବାନଣି
ଶରଣ ମାଗୁଛି ହେବ ଦାସୀ ।
ଦୟାକର ପ୍ରେମ ଭକ୍ତିମୟୀ
ଶରଣ ବତ୍ସଳା ମହାମାୟି ।
ଅପ୍ରକଟ ପ୍ରେମଗାଥା ତବ
ପ୍ରକାଶିବ ଯାହା ଅଭିନବ ।

## କବିବଂଶ ବର୍ଣ୍ଣନା

ଶ୍ଳୋକଃ

ବଂଶାବ୍ଧି ପୂର୍ଣ୍ଣଚନ୍ଦ୍ରଃ ସକଳଗୁଣଯୁତଃ ଶାସ୍ତ୍ରଧର୍ମଶୈଳାନ୍ତଗ୍ରୀ-
ସି ହିଃ ଶ୍ରୀମାନବେଷ୍ଟୁତ୍ତମ ଇତି ବିଦିତୋ ମେ ପିତା ବିପ୍ରଶ୍ରେଷ୍ଠଃ
ଦ୍ୱାତ୍ରିଂଶତ୍-ବର୍ଷଭୋଗୀ ସଗୁଣଗଣନିଧିର୍ଜ୍ୟେଷ୍ଠପୁତ୍ରୋ ମୃତଃସ୍ୟ
ଗୃହଂ ବର୍ତ୍ତେଂସହାୟଃ ପ୍ରଭୁଗୁଣରଟକଃ ପୋଷ୍ୟପୁତ୍ରଃ କନିଷ୍ଠଃ ।

ଖର୍ବ

ଅହେ ବୁଧ ହୋଇ ବୋଧ ବଂଶଲତା ଶୁଣ
ପିତା ମୋର ପଣ୍ଡିତର କୁଳେ ଗଣ୍ୟମାନ ହେ ।୧।
ବଂଶସିନ୍ଧୁ ପୂର୍ଣ୍ଣଇନ୍ଦୁ ବିବେକ ମହାନ
ତାହାଙ୍କର ନାମ ଧୀର ଶ୍ରୀପୁରୁଷୋତ୍ତମ ହେ ।୨।
ତନଭ୍ରାତ ହେଲୁଁ ସ୍ଥିତ ଔରସେ ତାଙ୍କର
ଗୁଣନିଧି ଦୟାନିଧି ଜ୍ୟେଷ୍ଠ ସହୋଦର ହେ ।୩।
ସେ ବୟସ ଯେ ବତଶ ହେଉ କାଳଗ୍ରାସେ
ନିପତିତ ହେ ପଣ୍ଡିତ ବିଧି ସିଦ୍ଧିବଶେ ହେ ।୪।
ପୋଷ୍ୟପୁତ୍ର ରୂପେ ଦତ୍ତ ହେଲେ ମୋ କନିଷ୍ଠ
ଏକା ମୁହିଁ କେ ମୋ ନାହିଁ ପ୍ରଭୁ ରଘୁଶ୍ରେଷ୍ଠ ହେ ।୫।
ହାହାକାର ପରିବାର ଅନ୍ନବସ୍ତ୍ର ହୀନ
ସଦାରାମ ଗୁଣଧାମ ରଟେ ମୋ ବଦନ ହେ ।୬।
ଏ ଦଦର ନାବେ ପର ଭର ଦଅ ଗୁଣ
ରତ୍ନାକର ରଘୁବୀର ଯିବ ନିଷ୍ଟେ ବୁଡ଼ି ହେ ।୭।

ଶ୍ଳୋକଃ

**ପଦ୍ମନାଭ ଶ୍ରୀଚନ୍ଦନ କୃତ ଶାସନକଂ ଯତଃ**
**ପଦ୍ମନାଭପୁରଂ ଚେତି ସଂଖ୍ୟାତଂ ନାମତଃ ସ୍ମୃତଃ ।୧୦**

ଖଣ୍ଡ

ମୋର ଗ୍ରାମ ନିଜ ଧାମ ପଦ୍ମନାଭପୁର
ସେ ସ୍ୱଜନ ଶ୍ରୀଚନ୍ଦନ କୃତ ଶାସନର ହେ ।୧।

ଶ୍ଳୋକଃ

**ବାଙ୍କୀକିଲ୍ଲା ଗତଂ ଯତ୍ର ଜିଲ୍ଲା କଟକ ସଂଗତଂ**
**ପାଟ୍ଟପୁର ମିତି ଖ୍ୟାତଂ ତଦ୍‌ବେଦ୍ୟୋଽହଂ ନ ସଂଶୟଃ ।୧୧**

ଖଣ୍ଡ

ବାଙ୍କୀ କିଲ୍ଲା ପୁଣି ଜିଲ୍ଲା କଟକ ନାମରେ
ଗ୍ରାମ ସିଦ୍ଧି ଯେ ପ୍ରସିଦ୍ଧି ଲୋକେ ପାଟପୁରେ ହେ ।୧।
ଜୟ ସୀତା ଗୁଣଯୁତା ଜୟ ରଘୁବୀର
ସେ ଯୁଗଳ ପଦତଳ ଚିନ୍ତା ନିରନ୍ତର ହେ ।୨।
ରକ୍ଷାକର ହେ କିଶୋର ଶ୍ରୀରଘୁନନ୍ଦନ
ନିରନ୍ତର କରୁ ନୀଳ ମୁଖ ଦରଶନ ହେ ।୩।

## ଗ୍ରନ୍ଥାରମ୍ଭ

ଶ୍ଳୋକଃ

**ନଜ୍ଞାନୀ ନାପିସେବୀ ସକଳବୁଧଜନେ ଶାସ୍ତ୍ରଗୁମ୍ଫେ କୃତାଯତ୍ନ**
**ସ୍ତନ୍ନାସୌ ରାମରାସୋଽଶ୍ରୁତିତତିବିଷୟସ୍ତାନୁକୂଲୋହି ରାମଃ**
**ଜାନେନସ୍ୟାଦସ୍ୟରାସୋତ୍ସବସ୍ତୁ କୃତିରିୟଂ ଚେତି ଶିକ୍ଷା ସୁଖାୟ**
**ବ୍ୟାପାରେ ମେ ତଥାପି ଶୃଣୁତ ଗୁଣିଗଣା! କାରଣଂ ତତ୍ପ୍ରସାଦଃ**

ଖର୍ବ

ଅହେ ବୁଧ ମୁଁ ଅବୋଧ ଜ୍ଞାନହୀନ ଘୋର
ଏହି ରସକୁ ପ୍ରକାଶ କରିବା ଶକ୍ତି ମୋର ହେ ।୧।
ରଘୁନାଥ ରାସକୃତ୍ୟ କାହିଁ ଦେଖା ନାହିଁ
ଅଳ୍ପମତେ ମୁଁ ତ ଏଣେ ବଖାଣେ କପାଇଁ ହେ ।୨।
ଧର୍ମବେଦାନ୍ତ ହେ ପଣ୍ଡିତ ପୁଂସ ଅନୁକୂଳ
ମୋର ରାମ ଗୁଣଧାମ ରଘୁବଂଶ ବାଳ ହେ ।୩।
ଏକ ପତ୍ନୀ କହୁଛନ୍ତି ଜନକ-ଦୁଲଣା
ବହୁନାରୀରେ ବିହାରୀ ହେଲେ ଏଥି କି ନା ହେ ।୪।
ଏଥି ଦୋଷ ହେ ଶଦୁଷ ହୋଇବ ଅପାର
ପୁଣି ରାମ ଘନଶ୍ୟାମ ବୀର ଅବତାର ହେ ।୫।
ଏ ବର୍ଣ୍ଣନା ହେବ ସିନା ଏଥି ଅକାରଣେ
ହେ ବିଦୁଷ ହୋଇ ତୋଷ ଅନନ୍ତର ଶୁଣ ହେ ।୬।

ଶ୍ଳୋକଃ

**ଅକ୍ଷ୍ୟଗ୍ନି ଗ୍ରହଚନ୍ଦ୍ରାବ୍ଦେ କାର୍ତ୍ତିକେ ଦ୍ୱାଦଶୀ ତିଥୌ**
**ଶୁକ୍ଳପକ୍ଷସ୍ୟ ରାତ୍ରୌଚ ଦୃଷ୍ଟୋ ରାମଃ ସ ଶ୍ୟାମଳଃ ।୧୩**

ଖର୍ବ

ଊଣେଇଶ ଯେ ବତଶ ମସିହା ଭୋଗରେ
ଶୁକ୍ଳପକ୍ଷ ତଥିଦକ୍ଷ ଦ୍ୱାଦଶୀ ନାମରେ ହେ ।୧।
ମାସଠିକ ଯେ କାର୍ତ୍ତିକ ରଜନୀର ଶେଷ
ଦୁଇ ଯାମ ମୋତେ ରାମ ସ୍ୱପ୍ନେ ହେଲେ ଦୃଶ୍ୟ ହେ ।୨।

ଶ୍ଲୋକଃ

**ମମାଗ୍ରତୋଽସୌ ଦ୍ୱିଜବେଶଧାରୀ**
**ମନ୍ଦଂ ହସନ୍ ଦେବ ବରୋ ବଭୌଚ**
**ଉତିଷ୍ଠ ବତ୍ସ ! ବଦ ରାମ ରାସଂ**
**ଚେତ୍ୟୀ ବଦନ୍ତ୍ ଜ୍ଞାନବତାଂ ବରିଷ୍ଠଃ ।୧୪**

ଖଟ୍ଟ

ଅବକଳ ସେ ଶ୍ୟାମଳ ଦ୍ୱିଜବର ବେଶେ
ମନ୍ଦେ ହସି ପ୍ରଭୁ ଆସି ଉଭାହେଲେ ପାଶେ ହେ ।୧।
ଧୀର ଧୀର କହି ଗିର ବେଗେ ଉଠ ଉଠ
ବାସନ୍ତିକ ରସୋତ୍ସବ କର ନୋହୁ ମଠ ହେ ।୨।
ସେ ଫାଲ୍‌ଗୁନ ମାସ ଜାଣ ଶୁକ୍ଳ ନବମୀରେ
ଅଧିବାସ କର ରସ ମନ୍ଦର ପାର୍ଶ୍ୱରେ ହେ ।୩।
ଏହି ବାଣୀ ସେହିକ୍ଷଣି ନିଦ୍ରା କରେ ନାଶ
ନେଇ ଫେଇ ଦେଲି ଗୃହିଁ ଦ୍ୱିଜବର ବେଶ ହେ ।୪।
କରି ସ୍ଥିତ ଉପବୀତ ନବଗୁଣ କନ୍ଧେ
ଉଭା ପାଶ ଦେଖି ତୋଷ ମନ୍ଦିଲି ଆନନ୍ଦେ ହେ ।୫।
କରି ଠାବ ମୁଁ କହଇ ଏ କା ଅଚମ୍ଭିତ
ରମରସ ଅପ୍ରକାଶ କେ ଜାଣିବ ତତ୍ତ୍ୱ ହେ ।୬।
ଯେହି ରମ ସେହି ଶ୍ୟାମ ନୁହଇ ତ ଏକା
ହେବ ଦୋଷ କଲେ ରସ ମୁଁ ହୁଏ ଠାଟକା ହେ ।୭।
ସାଧୁ ସନ୍ତ ସେହି ତତ୍ତ୍ୱ ଶୁଣିଲେ ହସିବେ
ଅବା କେହି କଥା କହି ଅଳପେ ଦୋଷିବେ ହେ ।୮।
ଅସ୍ଥକଲ ହେ କହିଲ ନୁହେ ଭଲ ବାଣୀ
ବିଶେଷେ ଠେକା ତର୍କମୀଙ୍କ ବୋଲେ ଦ୍ୱିଜମଣି ହେ ।୯।

ମୁଁ କହିବି ଯାହା ଭାବି ସେ ହୁଅଇ ଦୋଷ
ହେବ କ୍ଷତ ଅପଖ୍ୟାତ ନକଲେ ଏ ରସ ହେ ।୧୦।
ତେଣୁ ଭକ୍ତେ ମୁଁ ତ କହେ ରଘୁନାଥଙ୍କର
ସେ ମୋହନ ଗୁଣମାନ ନାହିଁ ନାରିବର ହେ ।୧୧।
ଦ୍ୱିଜ ଭୂଷ ନାରିବଂଶ ଛନ୍ଦ ନାଡ୍ୟସ୍ଥଳୀ
ସୁମୋହନ ବୀଣା ଶୁଣି ବାଜଇ କି ଭଳି ହେ ।୧୨।
ଶୁଣ ହେତୁ ମୁଁ ତାଙ୍କର କରେ ଦେଲି ଗୁହିଁ
ଶୂନ୍ୟଘର କେହି ମୋର ପାଶେ ଆଉ ନାହିଁ ହେ ।୧୩।

ଶ୍ଳୋକଃ

**କୃତ୍ୱା ଶିରସି ତସ୍ୟାଜ୍ଞାଂ ତତ୍ ପାଦାବ୍ଜଂ ବିଚିନ୍ତ୍ୟଚ**
**ତଦାରଭ୍ୟ କୃତଷ୍ଟାୟ୍ୟଂ ରାମରାସୋତ୍ସବୋ ମୁଦା ।୧୪**

ଖେଦ

ସେ ଚରିତ ଅବଶ୍ରାନ୍ତ ଭାବି କଲି ସ୍ଥିର
ତାଙ୍କ ଇଚ୍ଛାକୁ କେ ଅଛୁ କରେ ଅବାନ୍ତର ହେ ।୧।
ସେହି ଦିନଠାରୁ ଧ୍ୟାନ କରି ସେହି ପଦେ
କଲି ଠିକ ବାସନ୍ତିକ ରାସୋତ୍ସବ ମୁଦେ ହେ ।୨।
ମାସ ଠିକ ଜନ୍ମ କାର୍ତ୍ତିକ ଦ୍ୱାଦଶୀ ଦିବସ
ଆରମ୍ଭ ତ ହେଲା ଗୀତ ଶେଷ ମାଘମାସ ହେ ।୩।
ହୋଇ ତୋଷ ଯେ ଉଲ୍ଲାସ ସପ୍ତମରେ ସରେ
ସେହି ଦିନ ସଂକ୍ରମଣ ମକର ନାମରେ ହେ ।୪।
ଜୟ ସୀତା ଗୁଣଯୁତା ଜୟ ନୃପଧର
ସେ ଯୁଗଳ ପଦ ତଳ ଚିନ୍ତା କରେ ନୀଳ ହେ ।୫।

## ପ୍ରଥମ ଉଲ୍ଲାସ

ଶ୍ଳୋକଃ

**ପ୍ରଥମେ ରାସସଂରମ୍ଭେ ସରଯୂତଟକାନନେ**
**ରାମୋ ରରାମ ରାମାଭିଃ ଗର୍ବାତ୍ ତତ୍ୟାଜତାଃ ପୁନଃ ।୧**

ପୟାର

ପ୍ରଥମ ଉଲ୍ଲାସ ଗାଥା ଶୁଣ ସାଧୁଜନେ
ରାସ ନିମିତ୍ତରେ ସେହି ସରଯୂ-ପୁଳିନେ ହେ ।୧।
କନ୍ଦରପ ଦର୍ପନାଶ କରିବା ନିମିତ୍ତ
ମୋହନ ବପଞ୍ଚ ତାନେ ମୋହିଲେ ଅଚ୍ୟୁତ ହେ ।୨।
ସୁଶୀଳା ଯେ ପରିମଳା ଲୀଳା କାମକଳା
ବାସନ୍ତୀ ବଲ୍ଲଭା ବାଳା ମାଳତୀ ଚଞ୍ଚଳା ହେ ।୩।
ରସେଶ୍ୱରୀ ଜନକଜା ସଙ୍ଗେ ହରଷରେ
ନାଗରୀ ମଣ୍ଡଳୀ ମାଝେ ରସି ପ୍ରେମଭରେ ହେ ।୪।
ପ୍ରେମମୟ ପ୍ରେମମୟୀ କଲେ ତନ୍ମପୂର
ପୁଣି ଦେଖି ଗର୍ବ ଅତି ନାୟିକା ଗଣର ହେ ।୫।
ରାସ ମଣ୍ଡଳରୁ ରାମ ହେଲେ ଅନ୍ତର୍ଦ୍ଧାନ
ବିରହେ ପଡ଼ିଲେ ସେହି ଚତୁରୀ ରତନ ହେ ।୬।
ଏହି ମଧୁମୟୀ ଗାଥା ହୋଇବ ବର୍ଣ୍ଣନ
ଭବେ ନିତ୍ୟ ରଘୁନାଥ ନୀଳକଣ୍ଠ ଦୀନ ହେ ।୭।

ପାର୍ବତ୍ୟୁବାଚ

ଶ୍ଳୋକଃ

**କୈଳାସଶିଖରେ ରମ୍ୟେ ଗୌରୀ ପୃଚ୍ଛତି ଶଙ୍କରଂ**
**ଅଧୁନା ବ୍ରୂହି ମେ ନାଥ ରାମରାସୋତ୍ସବଂ ଶୁଭଂ ।୨**

ପୟାର

ମନୋରମ ରମ୍ୟମୟ ବସନ୍ତ-ନିବାସ
ନିରନ୍ତର ମୁଖରିତ ପକ୍ଷୀ-କଳ ଘୋଷ ହେ ।୧।
ଲତାତରୁ ଅତି ଗୂଢ଼ ସାମ୍ୟ ଶିକ୍ଷାସ୍ଥଳ
କପିଳାସେ ବସି ଉମା ପଶୁପତି କୋଳ ହେ ।୨।
ଯୋଡ଼ିଣ କର ପଙ୍କଜ ନବ ପ୍ରେମଭରେ
ପ୍ରଣମି ସେ ଦେବ ଦେବ ମହେଶ ପୟରେ ହେ ।୩।
ଦର ଦର ହାସେ ଦେବୀ ବୋଲନ୍ତି ବଚନ
ଅବଧାନ ହେଉ ଦେବ ଦେବ ତ୍ରିଲୋଚନ ହେ ।୪।
ତୁମ୍ଭ ମୁଖୁ ସୁଧାଧାରି ସମ ଅସେ ଝରି
ସୁସରସ ରାମରସ ଦେବ ତ୍ରିପୁରାରି ହେ ।୫।
କର୍ଣ୍ଣପୁଟେ ନିରନ୍ତରେ କରି ତାହା ପାନ
କୃତାର୍ଥ ହୋଇଲା ମୋର ଏହି ଅପଘନ ହେ ।୬।
ପ୍ରେମ ଅବତାର ରାମ ଗୁଣାତ୍ମକ ତନୁ
ସହଜରେ ନିର୍ଗୁଣ ସେ ଶୁଣିଲି ବଦନୁ ହେ ।୭।
ଅଧ୍ୟାତ୍ମ୍ୟ ଚରିତ ସେହି ଅତି ମଧୁମୟ
ଯୋଗେଶ୍ୱର ରାମ ଯହିଁ ହୁଅନ୍ତି ସଦୟ ହେ ।୮।

ଶ୍ଳୋକଃ

**ଓଁକାରବାଚ୍ୟୋ ରାମୋଽପି ବାଙ୍ମନୋବିଷୟଃ ପୁମାନ୍**
**ବାଚ୍ୟ ବାଚକ ଭେଦେନ ସ ବିଭାତି ଜଗନ୍ମୟଃ ।୩**

ଗୀତ

ରାମହିଁ ଓଁକାରମୟ ବିଷୟ ଗୋଚର
ବାଚ୍ୟ ବାଚକ ଭେଦରେ ନିତ୍ୟ ମାୟାଧର ହେ ।୧।

ଶୂନ୍ୟ ଯଥା ବାହ୍ୟ ଅଭ୍ୟନ୍ତରେ ଥାଏ ବ୍ୟାପି
ଗୁଣବନ୍ତ ରଘୁବୀର ଅନନ୍ତ-ସ୍ୱରୂପୀ ହେ ।୨।
ଜଗତେ ପୂରିତ ରାମ ରାମହିଁ ଜଗତ
ମାୟାବଳେ ନାନା ରୂପ କରେ ପ୍ରକାଶିତ ହେ ।୩।
ସେହି ମାୟାମୟ ପ୍ରେମ ରାସୋତ୍ସବ ଲୀଳା
ଶୁଣିବାକୁ ମନ ଅତି ଦୟାକର ଭୋଳା ହେ ।୪।
ମୋର ଲୋଭ ସଦାଶିବ ହୁଏ ନିରନ୍ତର
ନୀଳକଣ୍ଠ ଉମାପତି ଚରଣ-କିଙ୍କର ହେ ।୫।

ଭୂଷା

ଦୟା କର ଅହେ ଶୂଳଧାର !
କହ ରାମ-ରାସ ସୁବିସ୍ତାର ।୧।
ନିର୍ମଳ-ଉଜ୍ଜ୍ୱଳ ପ୍ରେମ ଗାଥା
ସାତ୍ତ୍ୱିକ-ସମ୍ମତ ରାମ କଥା ।୨।
ଚିନ୍ତି ଚିନ୍ତି ଯାଉ ଦିବା ନିଶି
ଦୀନ ହୀନ ନୀଳକଣ୍ଠ ଋଷି ।୩।

## ଶ୍ରୀ ମହାଦେବ ଉବାଚ

ଶ୍ଳୋକଃ

**ଧନ୍ୟୋଽୟଂ ଗୌରି ! ପ୍ରଶ୍ନସ୍ତେ ଯଂଶ୍ରୁତ୍ୱା ନନ୍ଦିତୋ ବୟଂ
କଥୟାମ୍ୟଧୁନା ରାସଂ ଶୃଣୁତୈତଽସ୍ୟ ତମୋହରଂ ।୪**

ଝଙ୍କ

ଧନ୍ୟ ପ୍ରିୟେ ଧନ୍ୟ ତବ ପ୍ରଶ୍ନ ସୁଧାମୟ
ଶ୍ରବଣେ ପ୍ରସନ୍ନ ହେଲା ହୃଦ ସମୁଦାୟ ଗୋ ।୧।

ବର୍ନନେ ଶୁଣ ଏବେ ଶତ୍ରେ ହେତୁ କର
କହିବ ଗୋ ରମ ରସୋତ୍ସବ ସୁବିସ୍ତାର ଗୋ ।୨।

ଶ୍ଳୋକଃ

**ମନ୍ଦାନିଲୈଃ କିଲ ସୁଶୀତଲଦିଗ୍‌ଦିଗନ୍ତଂ**
**ସଂକୂଜିତୈର୍ମୁଖରିତଂ ପିକଷଟ୍‌ପଦାନାଂ**
**ଉଦ୍‌ବୀକ୍ଷ୍ୟ ପୁଷ୍ପ ସମୟଂ ରମଣୀ ସନାଥୋ**
**ରନ୍ତୁଂହି ତସ୍ଥ କୁତୁକୀ ସମଭୂଚ୍ଛ ରାମଃ ।୬**

ଖର୍ବ

ସୁଲୋଚନା ମୃଦୁମନା ଶୁଣ ଏହୁ ରସ
ପରକଟ ଋତୁରାଟ ଧରଣୀ ପ୍ରଦେଶ ହେ ।୧।
ମନ୍ଦେ ମନ୍ଦେ ଛନ୍ଦେ ଛନ୍ଦେ ବହିଲ ମଳୟ
ଲତା ତରୁ ପୁଷ୍ପେ ଗୁରୁ ହେଲେ ଅତିଶୟ ହେ ।୨।
ମଧୁ ଲୋଭେ ଅଳି ସର୍ବେ ଚୁମ୍ବିଲେ ସୁମନ
ଗୁଣୁ ତାନ କିବା ଧନ ଗୁଣ୍ଠୁ ସୁବଚନ ଗୋ ।୩।
ସୂର୍ଯ୍ୟମୁଖୀ ମହାସୁଖୀ ଅଳଂଠ କି ଧରେ
ସତେ ଭ୍ରାଟ ଖଞ୍ଜରାଟ ମୁଖେ ନାଟ କରେ ହେ ।୪।
ନାନା ପକ୍ଷୀ ଗାନ ସଖି ! କିବା ଜୟଗାନ
କୋକିଳର ମଧୁସ୍ୱର କି ସେ ବୀଣା ତାନ ଗୋ ।୫।
ଦରବାର ନାଗେଶ୍ୱର ସମ ଫୁଲ୍ ଫୁଟେ
ପୁଷ୍ପରାଗ ଚତୁର୍ଦ୍ଦିଗ ଆନନ୍ଦରେ ଛୁଟେ ଗୋ ।୬।
ଅଳି ଗତି ଅଗୋ ସତି ! କି ସେ କାମଗୁଳି
ବିରହିଣୀ ଯେ ରମଣୀ ତାର ଧୃତ ଟାଳି ଗୋ ।୭।

ଫୁଲ୍ ଫୁଟେ ବାସ ଛୁଟେ ବାସମୟ ଧରା
ଯତ୍ନବନୀ ଯେତେ ଧନୀ ହେଲେ ଅମ୍ବହରା ଗୋ ।୮।
ରଜନୀରେ ସଜନ ରେ । କାମୀଏ ଅକୁଳ
ମନୋହର ବସନ୍ତର ଉତ୍ସବ ଚଞ୍ଚଳ ଗୋ ।୯।
ଏହିକାଳେ ମନେ ଭାଳେ ପ୍ରଭୁ ଯୋଗେଶ୍ୱର
ଏ ବସନ୍ତ ମନୋମତ କାଳ ବିହାରର ହେ ।୧୦।
ବିନୋଦନ ଲୀଳାମାନ କରିବି ମୁଁ ଖ୍ୟାତ
ପୂର୍ଣ୍ଣକାମ ନୋହେ ପ୍ରେମ ନକଲେ ଭକତ ହେ ।୧୧।
ନିତ୍ୟସ୍ଥଳୀ ରାସକେଳି ମନେ ମନେ ଭାବି
ଏ ଯେ ଯୋଷା ଭକ୍ତ ଆଶା ପୂରଣ କରିବି ହେ ।୧୨।
ଭାବି ମନ ମେ ଯେ ଘନ ସୁନ୍ଦର ଶ୍ରୀଧର
ମାୟାବଳେ ମୋହି ହେଲେ ସର୍ବ ପୁରନାରୀ ହେ ।୧୩।
ଧ୍ୟାନ ଯୋଗେ ମିଳେ ବେଗେ ସରଯୂ-ପୁଳିନ
ଚନ୍ଦ୍ରନିଶା ଆରେ ଯୋଷା ମୋହିନିଏ ମନ ହେ ।୧୪।
ଅପଘନ ରୋମୋଦ୍ଗମ ମଳୟ ପବନେ
ଶାନ୍ତାକର ଗୃପଧାରୀ ଯୋଗମାୟା ମନେ ହେ ।୧୫।
ଯୋଡି କରେ ପ୍ରେମଭରେ ଆରମ୍ଭିଲେ ସ୍ତୁତି
ଭାବେ ମାଳ ଅବିରଳ ଜୟ ସୀତାପତି ହେ ।୧୬।

ଦୁହା

ବସନ୍ତେ ବସନ୍ତ-ବସନର
ବାସନା ପୂରଣେ ଆନନ୍ଦର ।୧।
ମିଳିଲେ ସରଯୂ ନଦୀତୀରେ
ଯୋଗମାୟା ଶାନ୍ତ ଆନନ୍ଦରେ ।୨।

କରଯୋଡ଼ି ଅର୍ଚ୍ଚିଲେ ସୁତ
ଜୟ ଯୋଗେଶ୍ୱର ! ଅଦ୍ୟଶକ୍ତ ।୩।

ଶ୍ଳୋକଃ

**ସର୍ବ ମଙ୍ଗଳ ମାଙ୍ଗଲ୍ୟେ ଶିବେ ସର୍ବାର୍ଥସାଧିକେ
ଶରଣ୍ୟେ ତ୍ର୍ୟମ୍ବକେ ଗୌରି ! ନାରାୟଣି ନମସ୍ତୁତେ ।୬**

ଖର୍ବ

ଯୋଗମାୟା କର ଦୟା ମା ସର୍ବମଙ୍ଗଳେ !
ଭବେ ମାତଃ ! ଅବିରତ ଚରଣ ଯୁଗଳେ ଗୋ ।୧।
ସର୍ବ ଅର୍ଥ ପୁରୁଷାର୍ଥ ସାଧନ ତୋହର
ନାରାୟଣୀ ମା ରୁଦ୍ରାଣି ! ଶିବ ହୃଦହାର ଗୋ ।୨।
ତୋ ଅଭାବେ ମୁଁ ତ କେବେ ନକରେ ଏ ଲୀଳା
ଯୋଗମାୟା ଶିବଜାୟା ଦୟା ହେଉ ଭଲ ଗୋ ।୩।
ଏ ଦେହରେ ନାହିଁ କରେ ମୋହନ ମନ୍ତ୍ରର
ଉଚ୍ଚାଟନ ବଶମାନ ପୁଣି ସେ ଯନ୍ତ୍ରର ଗୋ ।୪।
ତଥାପି ତ ମୁହିଁ ସ୍ଥିତ ପରମାତ୍ମା ରୂପେ
ଧର୍ମ ସ୍ଥାପି ନାଶି ପାପୀ ଏ ସଂସାର କୂପେ ଗୋ ।୫।
ବଳେ ମନ ହାରେ ଜ୍ଞାନ ନିତ୍ୟ ରସକେଳି
ଶିବପ୍ରିୟେ ! ତୁ ସଦୟେ ପୂର୍ଣ୍ଣକର ଭଲି ଗୋ ।୬।
ଆଦ୍ୟଶକ୍ତ ନାରୀମୂର୍ତ୍ତି ତୁହି ଯୁଗେ ଯୁଗେ
ନୁହେ ରସ ନାରୀ ବଶ ବହ୍ନିନ ସୋହାଗେ ଗୋ ।୭।
ନିତ୍ୟସୁଖ ମା କୃପାଳୁ ଶିବ ମନୋହାର !
ଦାଞ୍ଚ ଅଣି ସୁଲକ୍ଷଣି ! ଅଷ୍ଟ ଗୋଟି ନାରୀ ଗୋ ।୮।

ସୁମୋହନ ବାଦ୍ୟଗାନ ତାଳ ଲୟ କର
ଏ ରଜନୀ ଗୋ ଭବାନି ! ହେଉ ଯୋଗମୟ ଗୋ ।୯।
ତେବେ ରାସ ହେବ ଶେଷ ଏହି ମୋ କାମନା
ଜବେ ନୀଳ ରଘୁବୀର ଚରଣ ଭାବନା ହେ ।୧୦।

ଡ଼ୁହା

ଯୋଗମାୟା ଜୟ ଆଦ୍ୟଶକ୍ତି
ଦୟାକର ଶିବ ପ୍ରିୟବତୀ ।୧।
ଯୋଗମାୟାଶ୍ରିତ ହେଉ ରାତ
ଦିଅ ଗୋ ମୋହନ ମନ୍ତ୍ରଶକ୍ତି ।୨।
ସେ ଶକ୍ତି ମୋହିବ ତନ୍ମୟର
ନାଟ୍ୟସ୍ଥଳୁ ମୋ ନାୟିକା ବାର ।୩।
ସ୍ତୁତରେ ସନ୍ତୋଷ ସେ ରୁଦ୍ରାଣୀ
ଉଭା ହେଲେ ପାଶେ କଣ୍ଠ ଭଣି ।୪।

---

## ଯୋଗମାୟା ଉବାଚ

ଶ୍ଲୋକଃ

**ତ୍ୱମେବ ମାତାଚ ପିତା ତ୍ୱମେବ**
**ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ**
**ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ**
**ତ୍ୱମେବ ସର୍ବଂ ମମ ଦେବ ଦେବ ।୬**

ଦୀର୍ଘ

ତୁମ୍ଭେ ତ ଜଗତ ପିତା ଅଖିଳ ଲୋକ କରତା
ତୁମ୍ଭେ ମାତା ତୁମ୍ଭେ ବନ୍ଧୁ ଜନ
ତୁମ୍ଭେ ତ ସଖା ପରମ ବିଶ୍ବବାସୀର ବିଶ୍ରାମ
ତୁମ୍ଭେ ସୂର୍ଯ୍ୟ ସୋମ ମହାଶୂନ୍ୟ ହେ
ପ୍ରଭୁ ହେ
ଭକ୍ତି, ପ୍ରୀତି, ମୁକ୍ତି, ଶାନ୍ତି, ତୁହି
ମାୟାତ୍ମକ ଗୁଣମୟ ଦେହୀ ହେ ।୧।
ତୁହି ପରମେ କୃପାଳୁ ସୃଷ୍ଟି ସ୍ଥିତି ପରିପାଳୁ
ଲୋମ କୂପେ ତୋର ମାଳ ମାଳ
ଅଶେଷ ବ୍ରହ୍ମାଣ୍ଡ ଖେଳ ହୋଇଅଛୁ ପରା ଠୂଳ
ମୁଁ ତ ପରିତୃପ୍ତି ପଦତଳ ହେ
ପ୍ରଭୁ ହେ
ଗୃଳିତ ମୁଁ ବାଳୀ କ ମୋ ବୁଦ୍ଧି
ଇଚ୍ଛା ପୂର୍ଣ୍ଣ ହେଉ ଦୟାନିଧି ହେ ।୨।
ବରଦ ପରମେଶ୍ବର ପଦ୍ମକରେ ଧର ଧର
ବାଇ ଧୀର ଧୀର ଏହି ବୀଣା,
ନବ ରସରାଜ ମୂର୍ତ୍ତି ଭାବ ତୁମ୍ଭର ଶ୍ରୀପତି
ହେବେ ରସବତୀ ମନ କ୍ଷୀଣା ହେ
ପ୍ରଭୁ ହେ
ବଳେ ବଳାଇତ ମୋହିନୀଏ
ପାଦପଦ୍ମ ତଳେ ଦେବେ ଲୟେ ହେ ।୩।
ତୁମ୍ଭ ପ୍ରେମେ ହୋଇ ବଶ ଅରମ୍ଭି ମୋହନ ରାସ
ପ୍ରେମମୟ କର ତନୟର

ରସରାଜ ମୂର୍ତ୍ତି ଧର ଲଭ ହୁଅ ତତପର
ଏ ମାଲତୀ ଲତା ତଳେ ଖର ହେ
ପ୍ରଭୁ ହେ
କୃପାସିନ୍ଧୁ ଦୀନବନ୍ଧୁ ନାମ
ନୀଳ ମନେ କରନ୍ତୁ ବିଶ୍ରାମ ହେ ।୪।

ଶ୍ଳୋକଃ

**ତତଃ ଶ୍ରୀରାମୋ ରସରାଜ ମୂର୍ତ୍ତିମାନ୍**
**ଅନଙ୍ଗକୋଟିଦ୍ୟୁତିହାରିବିଗ୍ରହଃ**
**ରାସେ ରତାନାଂ ସଖିବାରିଯୋଷିତାଂ**
**ବୀଣାଂ ମୁଦେ ବାଦୟତେ ସୁନାଦିନୀଂ ।୮**

ଯଥା ରାଗ

ଯହୁଁ ଶିବ ଜାୟା ଦେବୀ ଯୋଗମାୟା
ହେଲେ ଖରେ ଅନ୍ତର୍ଦ୍ଧାନ ହେ
ଶ୍ରୀରଘୁ ନନ୍ଦନ ଜଗତ-ବନ୍ଦନ
ଭାବିଲେ ମନେ ଏମାନ ହେ
ରସ-ରାଜ-ମୂର୍ତ୍ତି-ଧାରୀ
କୋଟି କନ୍ଦର୍ପ ରୂପକୁ ହାରି ହେ ।୧।
ମସ୍ତକେ ମୁକୁଟ ଦଶେ ଝଟ ଝଟ
ଶତ [illegible] ପ୍ରଭା ଗଞ୍ଜେ ହେ
ମକର କୁଣ୍ଡଳ ସେ ଗଣ୍ଡ ମଣ୍ଡଳ
ମୁକ୍ତାମାଳୀ ପୁଞ୍ଜେ ପୁଞ୍ଜେ ହେ
ଗଳେ ସର ଗୁପସରୀ
ରାମାନନ୍ଦୀ ରାମା ବଶକାରୀ ହେ ।୨।

କଟିର ମେଖଳା  କ୍ଷୁଦ୍ର ଘଣ୍ଟିମାଳା
ରୁଣୁଝୁଣୁ ହୋଇ ବାଜେ ହେ
ଘନେ ବିଦ୍ୟୁ ସମ  ଅହା କି ସୁଷମ
ପୀତବାସ କଟି ମାଝେ ହେ
ଭିଡ଼ା ଦୋଷଡ଼ା ଯତନ
ମୋହ ନେବ ନାହିଁ କାହା ମନ ହେ ।୩।
ପଦରେ ନୂପୁର  କରେ ମୃଦୁସ୍ୱର
ତରୁଣ କେଶରୀ ଚଳା ହେ
କରୁଣ ସେ ଗୃହୁ  ବନାନ୍ତରେ ପଛୁ
ଝଙ୍କୁ ଉଲ୍ଲସିବ ମଳ୍ଲା ହେ
କୁସୁମରେ ଗନ୍ଧ ଶୋଭି
ସୁର ନାରୀଏ ହୋଇବେ ଲୋଭି ହେ ।୪।
ସର୍ବାଙ୍ଗରେ ହର—  ଚନ୍ଦନ, ଅଗୁରୁ
ଗଳାରେ ତୁଳସୀ ଦାମ ହେ
କୋଟିଏ ମଦନ  ଗୋଟିଏ ହେଲେ କି
ତେସନ ମୂରତି ଧାମ ହେ
କାମ ମୋହନ ଶ୍ରୀକରେ
ବୀଣା ବାଏ ମୃଦୁ ମୃଦୁ ସ୍ୱରେ ହେ ।୫।
ଉଠେ ସେ ମୋହନ  ବୀଣା ମଧୁ ସ୍ୱନ
ଧରଣ ପଞ୍ଚମ ତାନ ହେ
ଅସ ଅସ ଲୀଳେ  ମାଳତୀ ରଙ୍ଗଲେ
ବାସନ୍ତୀ ସଲ୍ଲଲେ ଧନ ଗୋ
ପରିମଳା ଗୋ ସୁଶୀଳା
କାମକଳା ମୋ ବଲ୍ଲଭ ବାଳା ଗୋ ।୬।

# ଚତୁଷ୍ପଦୀ

(ବଂଶୀ ବାଜେ ଗୋ, ମଧୁର କାଦମ୍ବ ତରୁତଳ ବାଣୀରେ)

ବୀଣା ବାଜେ ଗୋ
ସରଯୂ-ତଟିନୀ-ତଟବନେ
ପ୍ରେମଭରେ ସୁପଞ୍ଚମ ତାନେ ଗୋ ।୦।

ମଳୟ ପବନ ସଙ୍ଗେ    ଖେଳି ଅସେ ନାନାରଙ୍ଗେ
ଉପୁଜାଏ ଭ୍ରମ ମନେ ମନେ
ସେ ତାନରେ ଧରି ସ୍ୱର    ନାଚେ ମୟୂରୀ ମୟୂର
ପିକ ମତ୍ତ ହୁଏ ମଧୁଗାନେ ଗୋ ।୧।

ତେଜିଲେ ତୃଣ କବଳ    ମୃଗ କୃଷ୍ଣସାର ଦଳ
ଅନାଇଁଲେ ନିଷ୍ଚଳ ନୟନେ
ପାଷାଣ ହୋଇଲା ପାଣି    ବହେ ସରଯୂ ଉଜାଣି
ଶୁଷ୍କ ତରୁ ପଲ୍ଲବ ସଘନେ ଗୋ ।୨।

ମୀନ ହେଲେ ଖଳବଳ    ଚକ୍ରୀତ ସାରସ କୁଳ
ଦନ୍ତାବଳ ରହିଲେ ମଉନେ
ନିମିଷେ ଛାଡ଼ିଲେ ହଂସୀ    ପ୍ରେମ କରାଇ ସୁଦଶୀ
ବନ୍ଧ୍ୟାଲତା ଶୋଭିତ ସୁମନେ ଗୋ ।୩।

ଯୋଗଭଙ୍ଗ କରି ଯୋଗୀ    ମାନସେ ହେଲେ ଉଦ୍‌ବେଗୀ
ଅମରେ ଅଥୟ ହେଲେ ଶୂନ୍ୟେ
ଚଣ୍ଡୀଙ୍କୁ ଯେ ଚୁଣ୍ଡୀଭୂତ    କୋଳ କଲେ ଉମାକାନ୍ତ
ନୀଳକଣ୍ଠ ଭାସେ ମୋଦମନେ ଗୋ ।୪।

ଶ୍ଳୋକଃ

**ବୀଣାଂ ତଦା ବାଦୟତି ରଘୂତ୍ତମେ**
**ପ୍ରେମ୍ନାପ୍ଲୁତା ସ୍ଥାବର ଜଙ୍ଗମାତ୍ମିକା**
**ନିତମ୍ବିନୀନାଂ ହୃଦି ପଞ୍ଚସାୟକୋ**
**ଜାଗର୍ତ୍ତି ତାସାଂ ନ ଭବେତ୍ ବ୍ୟଥା ଚ କା ।୯**

ପୟାର

ବାଜେ ବୀଣା ମନ କ୍ଷୀଣା ଉଲ୍ଲସେ ପରାଣ
ପ୍ରେମଭର ସେ ସ୍ଥାବର ଜଙ୍ଗମାଦି ଜାଣ ହେ ।୧।
ରସନାଧି ଅଉଷଧି ଲତା ଥିଲେ ଯେତେ
ଉଜ୍ଜ୍ୱଳିତ କଲେ ଗୋଏ ହିଁ ବଣ୍ୟ ପଥେ ହେ ।୨।
ପ୍ରେମଭରେ ତରତରେ ବନଦେବୀ ଗଣ
ଦେଲେ ଜାଳି ଅରେ ବାଳି ! ପ୍ରଦୀପ ସୁମନ ଗୋ ।୩।
ଶୁଣ୍ଡେ ଶୁଣ୍ଡ କର ତୁଣ୍ଡେ କର୍ଣ୍ଣିକ କରିଣୀ
ଶ୍ରବଣରେ ମୃଗ ଧୀରେ ପରଶେ ହରିଣୀ ହେ ।୪।
ରାଜହଂସ ମନେ ତୋଷ ବିସ ଖଣ୍ଡ ଧରି
ହଂସୀ ମୁଖେ ଦେଲ ସୁଖେ ପ୍ରେମେ ଧୀର କରି ହେ ।୫।
ଅଫୁଟନ୍ତା ତରୁଲତା ପୁଷ୍ପବତୀ ହେଲେ
ହିଂସା ଦ୍ୱେଷ ପଶୁବଂଶ ଅନନ୍ଦେ ଛାଡ଼ିଲେ ହେ ।୬।
ବଣକରେ ସେ ନିପୁରେ ମଧୁ ବୀଣାତାନ
ମନ ସଧେ କାମ ବିନ୍ଧେ ତା'ର ପଞ୍ଚବାଣ ହେ ।୭।
ଅବଳା କି ସହେ ସଖି ! କାମର ଏ ଦାଉ
ନାମ ଧରି ଡାକେ ଥିରି କେ ପାରିବ ଅଉ ଗୋ ।୮।

ଆସ ଆସ ମୋ ମାନସ-ଆକାଶ-ଚନ୍ଦ୍ରିକା
ନିତ୍ୟସ୍ଥଳୀ ଯେତେ ବାଳୀ ପ୍ରେମ-ପ୍ରଦାୟିକା ଗୋ ।୯।
ସତ୍ୟେ ଏକା ବଦରିକା ପୁରେ କଲ ରାସ
ନରସିଂହ ବନ୍ଧୁ ଅଙ୍ଗ ଭାଇ ମୋର ଶେଷ ହେ ।୧୦।
ଚଉଷଠୀ ସସ୍ତ ଗୋଷ୍ଠୀ ହୋଇ ତୁମ୍ଭେ ମେଳେ
ନାଙ୍କବେଦୀ ପରେ ମୋଦୀ ଲକ୍ଷ୍ମୀ ଧେନି କୋଳେ ଗୋ ।୧୧।
କଲ ସତ୍ୟ ଅର୍ଦ୍ଧମାନ ଏହି ଅବତାରେ
ହେବ ରାସ ପ୍ରେମରସ ସରଯୂର ତୀରେ ଗୋ ।୧୨।
ଭୁଲିଲ କି ପ୍ରିୟ ସଖି ! ତୁମ୍ଭର ଯେ ପଣ
ଆସ ଆସ ରାସ ରସ ନୋହୁ ଅକାରଣ ଗୋ ।୧୩।
ଏହି ତାନେ ମୋହ ମନେ ବାଣୀ ବାଏ ହର
ଚନ୍ଦ୍ରେ ନୀଳ ଅମ୍ବରଲ ରାମ ଗୃହଧାରି ହେ ।୧୪।

ଶ୍ଳୋକଃ

**ସ୍ୱାଗତଂ ବୋ ମହାଭାଗାଃ ମମ ନିତ୍ୟସ୍ଥଳୀ ସ୍ତ୍ରିୟଃ**
**ରାସ ଲୀଳା ପ୍ରକାଶାର୍ଥଂ ଭକ୍ତଭାବହିତେ ରତାଃ ।୧୦**

ଦୀର୍ଘ

ଆସ ଆସ ପ୍ରାଣସଖି ଏବେ ପାସୋରି ଦେଲ କି ?
ପବନ ପ୍ରତିଜ୍ଞା ତବ ଧନ୍ୟ !
ଅଗେ ନବ ଯଉବନା ସୁ-କୁନ୍ଦଦନ୍ତୀ ସୁମନା
ପ୍ରେମମୟୀ ଭାବ-ରସିକିଣୀ ଗୋ
ଧନ୍ୟ ଗୋ
ହୃଦାକାଶ-ଅମଳ-ଚନ୍ଦ୍ରିକା
ସଦା ନିତ୍ୟ-ପ୍ରେମ-ପ୍ରକାଶିକା ଗୋ ।୧।

ତମାଳ କେଶୀ ଏ କାଳ    ମଳୟ ମରୁତ ମେଳ
ଅଳି-କୁଳ-ସଂକୁଳ-କାନନ
ବିକଶେ କୁନ୍ଦ-ମନ୍ଦାର    ସୁ-ମାଳତୀ-କୋବିଦାର
ଚନ୍ଦ୍ର ହାସେ ସାନ୍ଦ୍ରଟି ଗଗନ ଗୋ
ଧନ୍ୟ ଗୋ
ନାଟ୍ୟ ଭକ୍ତି-ଭାବ ହୃଦେ ଉଠା
ଅୟି ପ୍ରେମମୟି ! ରସଲତା ଗୋ ।୨।
ଲୋଳ-ନୟନା ! କଲ୍ଲୋଳ    ଫେଣ୍ଟୁ ଅଟ୍ଟ କଳବଳ
ଛଳ ଛଳ ପ୍ରେମେ ମୀନରଶ୍ମି
ଛବିମୟି ! ପଦ୍ମ ସମ    ହୋଇଲ୍ କି ଲଭି ଭ୍ରମ
ଅଗୋ ଲୀଳା ! ଚଞ୍ଚଳା ସୁହାସି ଗୋ
ଧନ୍ୟ ଗୋ
ପଦ୍ମଲା ବାସନ୍ତୀ ବଲ୍ଲଭା
ଭୁଲି ସବୁ ଚଳି କେଳି କିବା ଗୋ ।୩।
ଅୟି କାଶ ସୁ-ହାସିନୀ !    କାମ-କେଳି-ଉଲ୍ଲାସିନୀ !
ମଦନା, ସୁଶୀଳା, କାମକଳା
ଅହା ! ଏ ମୋହନ ତାନ    ତୃପ୍ତ କି ନକଲ୍ କାନ
ଧ୍ୟାନମୟି ! ଭାବେ ହେଲ ଭୋଳା ଗୋ
ଧନ୍ୟ ଗୋ
ହୃଦାକାଶ-ଅମଳ-ଚନ୍ଦ୍ରିକା
ସଦା ଶୁଦ୍ଧ-ପ୍ରେମ-ପ୍ରଦାୟିକା ଗୋ ।୪।

ଊହା

ବୀଣାସ୍ୱନେ ଡାକେ ରଘୁନାଥ
ଅୟି ସଖି ପ୍ରାଣି ପଞ୍ଚଭୂତ ।୧।

ତୁମ୍ଭ ବନେ ରାସ କାଶବାସି !
ନହୁଏ ସମ୍ପୂର୍ଣ୍ଣ କଣ୍ଠ ଭକ୍ତି ।୨।

## ଚତୁସ୍ତ୍ରଧୀ

(ଭଲ ସେ କାଳିଅ କେତେ ରଙ୍ଗରେ ପ୍ରଭୁ)

ଆସ ରସିକେନ ! ରାସ-ରସରେ ରସାଇବ
କଟାକ୍ଷ-ଲଙ୍ଗଳେ ତନୁ-ଭୂମିକ ଚଷାଇବ ।୦।
ଭାବାବେଶ ପରିହାସ ମଧୁରେ କର ପ୍ରକାଶ
ଦ୍ରବିଗଲେ ହୃଦ ନୀବୀ-ବସନ ଖସାଇବ ।୧।
କମଳ-କୋମଳ-ମୁଖେ ଘନ ଚୁମ୍ବ ଦାନ ସୁଖେ
ଦର୍ପକ ଦର୍ପକ ହେଲେ ବିହ୍ୱନ ଲସାଇବ ।୨।
କୁଞ୍ଜେ କୁଞ୍ଜେ ଫେରି ଫେରି ପୁଞ୍ଜେ ପୁଞ୍ଜେ ବିମ୍ବାଧର !
ତାମ୍ବୁଲ ପ୍ରଦାନ ଲୋଳ-ନୟନ ! ହସାଇବ ।୩।
ସଲୀଳେ ଆସ ଆସ ଗୋ ଲଳା ! ବାସନ୍ତୀ ଚପଳା ବାଳା
ନୀଳ ଭାଷେ ଦିବ୍ୟ-ପ୍ରେମ-ତରଙ୍ଗେ ଭସାଇବ ।୪।

ଶ୍ଳୋକଃ

**ଶ୍ରୁତ୍ୱା ଧ୍ୱନିଂ ଯୁବତୟୋ ରଘୁନନ୍ଦନସ୍ୟ**
**ତ୍ୟକ୍ତ୍ୱାଖିଳାନି ନିଜକର୍ମପରମ୍ପରାଣି**
**ହା ରାମ ରାମ ଘନସୁନ୍ଦର ହେ ବଦନ୍ତ୍ୟଃ**
**ଆୟାନ୍ତି କାନନ ପଥ ତ୍ୱରିତଂ ସୁରମ୍ୟାଃ ।୧୧।**

ଯଥା ରାଗ

ଶୁଣି ବୀଣା ଧ୍ୱନି                    ସକଳ ତରୁଣୀ
ତେଜି ବିଷୟ-ବାସନା ହେ
ନବ ରମ୍ୟ ବେଶେ                କାନନ ପ୍ରଦେଶେ
ଆସୁଛନ୍ତି ମୋଦମନା ହେ
କା'ର ଖସେ ଅଭରଣ
କୁଚେ ନରହେ କା'ର ବସନ ହେ ।୧।
ଅଞ୍ଜନ  ରଞ୍ଜନ                  କରୁ କେ ଖଞ୍ଜନ—
ନେନେ, ଶୁଣେ ବୀଣାସ୍ୱନ ହେ
ବରଜଣ ପାଣୀ                  ଅସେ  ହେମଗାଣୀ
ତେଜି ଯାବକ ଲେଖନ ହେ
ମୃଗ-ଶାବକ-ନୟନା
କେ ବା ଥିଲା ବକଧ୍ୟାନମଗ୍ନା ହେ ।୨।
କେ ଅବା ମଞ୍ଜୀର                 ଖଞ୍ଜୁ  ତର  ତର
ହୋଇ ଆସୁଅଛୁ ଧାଇଁ ହେ
ଭାଙ୍ଗନ୍ତେ ତାମ୍ବୁଲ               କେ  ହୋଇ ବ୍ୟାକୁଳ
ପୂଗ ଅଲାଚ ନାହିଁ ହେ
ମୁଖେ ଭରିଅଛୁ ବାଲି!
ଗନ୍ଧ ଫେଡ଼ି ଧରି କେ ଛଇଳୀ ହେ ।୩।
କେବଣ ସଙ୍ଗୀତ—               ପ୍ରବୀଣା, ଇଙ୍ଗିତ
ହେଉଥିଲା ସହୁ ସଙ୍ଗ ହେ
ଦୂରେ ଫିଙ୍ଗି ପଶା              ଅସେ କେଉଁ ଯୋଷା
ପ୍ରେମ-ପୁଲକିତ ଅଙ୍ଗ ହେ
ରଙ୍ଗ ରାଜୀବ ଚରଣା
ତୁଙ୍ଗ ଗିରିବର ଶୃଙ୍ଗସ୍ତନା ହେ ।୪।

ସମ୍ପତ୍ ବିପତ୍ ଭାବି କେ ଯୁବତୀ
ଅତି ଆରତରେ ଧାଇଁ ହେ
ରତି ପଣ୍ଡିତା କେ ଅଞ୍ଜନ ଚିବୁକେ
ଉନ୍ମାଦଭରରେ ଲଗାଇ ହେ
ବଳା ଗଳାଇ କେ କର
ମାଳା ଝିଞ୍ଜି ହୋଇଛି ପୟର ହେ ।୫।

କାଞ୍ଚୀଦାମ ଖଟ— ଦେଲା କେ ବରଞ୍ଚି—
ମୋହନୀ କମ୍ବୁ କଣ୍ଠରେ ଗୋ
ଉଲଟାଇ ଶାଢ଼ୀ ପିନ୍ଧିଲା ସଜାଡ଼ି
ଯତ୍ନ ନଦେଇ ଶିରେ ଗୋ
ସେ ଯେ ବାଣୀ ସୁମୋହନ
ନରଖିଲା କୁଳଶୀଳ ଜ୍ଞାନ ଗୋ ।୬।

କି ଅବା ମଦନ କରିଲା ଯତନ
ନାଗରୀ-ଗୁଣ୍ଡିଚୁ ଯାତ୍ରା ଗୋ
ପତାକା-ଅଞ୍ଚଳ ଉଡ଼ିଲା ଚଞ୍ଚଳ
ବାଦ୍ୟନାଦେ ହେଲା ଯୁକ୍ତା ଗୋ
ମଞ୍ଜୁ ମଞ୍ଜୀର-ଶବଦ
କଣି କଣି କିଙ୍କିଣୀର ନାଦ ଗୋ ।୭।

ଯୋଗମାୟାଶ୍ରିତା ରଜନୀ ଅବସ୍ଥା
ମାୟାଧର ମାୟାବଳେ ଗୋ
ନଜାଣନ୍ତି କେହି ରମଣୀଙ୍କୁ ନେଇ
ଯୋଗେଶ୍ୱର ଏହି ଛଳେ ଗୋ
ରାସ ଆରମ୍ଭିବେ ବନ
ରାସେଶ୍ୱରୀ ସୀତା ସଙ୍ଗତେଣ ଗୋ ।୮।

ଶ୍ୟାମଘନେ ଧୀରେ     ବିଦ୍ୟୁ-ପରିଧିରେ
ବେଷ୍ଟିତ ବିମ୍ବୋଷ୍ଠୀ ହେଲେ ଗୋ
ଧରି ତାଳ ଲୟ     ହୋଇ ମୁଦମୟ
ଉନ୍ମାଦଭରେ ଶୁଣିଲେ ଗୋ
ସର୍ବେ ପ୍ରତିମା ସଦୃଶ
ପରସ୍ପରେ ବୋଲୁଛନ୍ତି ଭାଷ ଗୋ ।୯।
କାହା ମୁଖୁ ବାଣୀ     ନଆସଇ ପୁଣି
କେବା ପ୍ରେମ ଗଦଗଦ ଗୋ
ଚିନ୍ତ ରସ ରାଜ—     ମୂରତିକୁ ଅଜ
ଦୀନ ନୀଳକଣ୍ଠ ପଦ ହେ
ପ୍ରେମମଦେ ଗାଏ ଧୀର
ନାହି ନାହି ପ୍ରେମମୂର୍ତ୍ତି ଧର ହେ ।୧୦।

ଶ୍ଳୋକଃ

**ବାମାଭ୍ରୂଭଙ୍ଗୀକୃତସଙ୍ଗମେକ୍ଷଣାଃ**
**ଶ୍ରୀରାମପ୍ରେମ୍ଣି ତତମଜ୍ଜନାଃ ପରଂ**
**ପରସ୍ପରଂ ଭାବିତରାମରୂପକାଃ**
**ବ୍ରୁବନ୍ତି ବାକ୍ୟଂ ସକଲା ମଳାପହମ୍ ।୧୨**

ଯଥା ରାଗ

ସକଳ ସୁନ୍ଦରୀ     କରି ଧରାଧରି
ପରସ୍ପରେ କହାକହି ହେ
ଦେଖ ଏ ସୁନ୍ଦର     କରୁଛି ହୃଦର
ମଦନୁ ସୁନ୍ଦର ହୋଇ ଗୋ
କେହି ଭ୍ରୂଭଙ୍ଗି ନର୍ତ୍ତଏ
କେବା ଇଙ୍ଗିତେ ନେତ୍ର ଚମ୍ପାଏ ଗୋ ।୧।

କେ ବୋଲଇ ବୀଣା ବଜାଇଣ କି ନା
ସାରିଲା ଅମ୍ଭ ଗୌରବ ଗୋ
ଶୁଣି ଏହା ତାନ ଡେଙ୍ଗଲେ ସଦନ
ପୁଣି ବିଷୟ ବିଭବ ଗୋ
ଧନ୍ୟ ସୁମୋହନ ତାନ
ନାଶି ବୁଦ୍ଧି କରି ଦିଏ ଅନ ଗୋ ।୨।
କେ ବୋଲଇ ସଖି ଅନା ମୁଖଟିକି
କୋଟି ଚନ୍ଦ୍ର ହଟି ଯିବେ ଗୋ
ଭ୍ରୂଲତାର ଖେଳ କିଅବା ଭ୍ରମର
କମଳେ ବସିଛୁ ଏବେ ଗୋ
କେହୁ କହେ ଅଗସର
ଅନା ବକ୍ଷଦେଶ ସହଚରି ! ଗୋ ।୩।
ମୃଣାଳ କୋମଳ ସେ ବାହୁ ଯୁଗଳ
କଣ୍ଠ କର ଶୋଭା ଜଣେ ଗୋ
କଣ୍ଠେ ଗୁପସର ପାଶ କି ଅମ୍ଭର
ପାଇଁକି ରଖିଛୁ ଏଣେ ଗୋ
ତାର ତ୍ରିଭଙ୍ଗିମ ଠାଣି
ସଖି, ଅମ୍ଭ ପ୍ରାଣ ନିଏ ଟାଣି ଗୋ ।୪।
ଫୁଲ ଭୁଲ ହାସ କରୁଛି ପ୍ରକାଶ
ଡାକେ ଅସ ଅସ ବୋଲି ଗୋ
କେ ନହେବ ବିକ ହେବାକୁ ସେବକୀ
କୁଳେ ଦେଇ ଜଳାଞ୍ଜଳି ଗୋ
ସେ ଯେ ମୋହନ ବପୁ
ଟାଣି ଅଣେ ଫିଟାଇଣ କଞ୍ଚି ଗୋ ।୫।

· ସହ୍ରି ଅସ ଅସ  ସେ ପଦ-ସାରସ—
ତଳେ ଶରଣ ପଶିବା ଗୋ
ମଦନ ମଦରେ  ପଡ଼ି ସେ ପଦରେ
କାମ-ତାପ ବିନାଶିବା ଗୋ
ବୋଲେ ଦୀନ ହୀନ ନୀଳ
ପ୍ରଭୁ ପଦ ସେବା ମୋର ମୂଳ ଗୋ ।୬।

## ଚତୁଷ୍ପଦୀ

(ମନ ମୋହନ ମନ୍ତ୍ରର ତୋର ଭଙ୍ଗୀ, ଅରେ ପ୍ରାଣସଙ୍ଗି ପ୍ରଭ)

ଅରେ ପ୍ରାଣସଙ୍ଗି !
କେତେ ସୁନ୍ଦର ମୋହନ ମୂର୍ତ୍ତି ଭଙ୍ଗୀ ।୦।
କୋଟିଏ ମଦନ ଯୁଟିଗଲେ
ହଟି ଯିବେ ପାଦପଦ୍ମ ତଳେ
ନେଦ ଅଳ ଖେଳା  ଦେଖ ଅଗୋ ଲୀଳା !
ଭ୍ରୂଲତା ଜିଣିଛୁ ସୁ-ଭୁଜଙ୍ଗୀ ।୧।
ସୁଶୀଳା ! ଅନା ବିଶାଳ ଭୁଜେ
ତରୁଣ କେଶରୀ କଟି ମାଝେ
ଅରୁଣ ଜଙ୍ଘ  ଯିବ କିବା ହେଲ
ଗମାନନ୍ଦୀ ଅବା ସୁନାଅଙ୍ଗି ! ।୨।
ହସି ଦେଲେ ଖସି ପଡ଼େ ପରି
ଶଶୀ ଦେହୁ କିବା ସୁଧା ଧାରି
ଅଧର ଅମୃତ  ପାନକୁ ରେ ମିତ !
ଲେଭପ୍ରିତ ଏ ଚକ୍ର-ରଥାଙ୍ଗୀ ।୩।

ଶରୀ ଯାଉ ହେବେ ଦାସୀ ପଣେ
କି ହୋଇବେ ଅସ୍ଥ ପର ପଣେ
ନୀଳକଣ୍ଠ ଭଣେ ମୁଁ କାଷ୍ଟପ୍ର ଏଣେ
ହେବୁ ସେହ୍ନ ପଦଧୂଳି ଅଙ୍ଗୀ ।୪।

ଉହା

ପରସ୍ପରେ କହାକହି ନାରୀ
ରସରାଜ ମୂର୍ତ୍ତି ଅବଧାରି ।୧।
ହେଲେ ପ୍ରେମଭରେ ବାହ୍ୟଲାଭ
କେହ୍ନୁ ବୋଲେ ଜୟ ରଘୁନାଥ ।୨।

## ଶ୍ରୀରାମ ଉବାଚ

ଶ୍ଳୋକଃ

**କୁଶଳଂବୋ ବରାରୋହାଃ ନିର୍ଭୟଂ କଥମାଗତାଃ**
**ବଦ ସ୍ୱ ସ୍ୱ ପତିଂ ତ୍ୟକ୍ତ୍ୱା ନିଶାୟାଂ କାନନଂ ବୃଥା ।୧୩**

ଧୀର୍ଘ

ଅଗୋ ସର୍ବ ସୁଲକ୍ଷଣି ! ଏ ମହାଘୋର ଯାମିନୀ
କାମିନୀ କି ପାଗଳିନୀ ହେଲ ?
ବରଜ ସବୁ ବଧୂ ତେଜି ପତି ପୁତ୍ର ମାୟା
କି କାରଣେ କାନନେ ଅଇଲ ଗୋ
ଧନ୍ୟ ଗୋ
କହ କହ ଆସିବା କାରଣ
ରଜନୀରେ ଭୟ ନାହିଁ ପୁଣ ଗୋ ।୧।

ନବ ସପତ ବୟସି !　　ପତିଙ୍କ ସେବାରେ ରସି—
ଥିଲେ, ମନେ ହସି ମଘବାନ,
କନକ ବିମାନେ ଭରି　　ନେବେ ଗୋ ଅମର ପୁରୀ
ସୁର ବନ୍ଦୀ ଗାଇ ଯଶୋଗାନ ଗୋ
ଧନ୍ୟ ଗୋ
ପାରିଜାତ ଲମ୍ବାଇଣ ଗଳେ
ଅମୃତ ଭୁଞ୍ଜାନ୍ତେ କୁତୂହଳେ ଗୋ ।୨।
ଲେଖା ହୁଅନ୍ତୁ ଦୁଃଖୀଲେ　　ପତି ତବ ଗୃହୀଲେ !
ଅଜ୍ଞାନ, ପାଷଣ୍ଡ, ନାସ୍ତିକରେ
ତାକୁ ତ୍ୟାଗ କଲେ ନାରୀ　　ଅନ୍ତେମେ ନରକ ବାରି
ପ୍ରେତପତି ଦିଏ ଅନାଦରେ ଗୋ
ଧନ୍ୟ ଗୋ
ଧର୍ମଶାସ୍ତ୍ରେ ନାହିଁ କିବା ମତି
ତେଣୁ ତେଜ ଅସିଲ୍ ସୁଗତି ଗୋ ।୩।

ଶ୍ଳୋକଃ

**ପତି ଧର୍ମଃ ପତି ସ୍ୱର୍ଗଃ ପତିସ୍ତୁ ପରମଂତପଃ**
**ପତୌତୁ ପ୍ରୀତି ମାପନ୍ନେ ପ୍ରୀୟନ୍ତେ ସର୍ବ ଦେବତାଃ ।୧୪**

ଦାର୍ଢ୍ୟ

ପତି ଧର୍ମ ପତି ସ୍ୱର୍ଗ　　　　ପତି ପର ଅପବର୍ଗ
ପତି ସେବା ପରମ ତପସ୍ୟା
ପତି ବିନାରେ ରମଣୀ　　　ଚଳି ନପାରେ ଧରଣୀ
ପତି ପ୍ରୀତ ହୋଇଲେ ସୁଦୃଶା ଗୋ
ଧନ୍ୟ ଗୋ
ପରମ ସନ୍ତୋଷ ସର୍ବ ଦେବେ
କରନ୍ତି କଲ୍ୟାଣ ସଦା ଶୁଭେ ଗୋ ।୧।

ନିର୍ମାଲ୍ୟ ପତି ଉଚ୍ଛିଷ୍ଟ ପଦ ତୀର୍ଥ ଭୂମି ଶ୍ରେଷ୍ଠ
ପତି ସ୍ୱୟଂ ବସ୍ତୁ ରମଣୀର
ପତି ଯୋଗୁଁ ସତୀ ବଳ ଜଗତେ ଅତି ପ୍ରବଳ
ନଜାଣ କି ଶାସ୍ତ୍ର ଧର୍ମ ସାର ଗୋ
ଧନ୍ୟ ଗୋ
ପତି ତେଜି କି କରିବ ଧର୍ମ
ଅନ୍ତେ ନଷ୍ଟ ହେବ ସବୁ କର୍ମ ଗୋ ।୨।
କି ଅବା ଶ୍ରୀପଦେ ପଡ଼ି ଆସିଲ ସଦନ ଛାଡ଼ି
ଜଣାଯାଏ ମତି ବିଚଳିତ
ଶ୍ରୀଅଙ୍ଗୁ ବହଇ ସ୍ୱେଦ ଭୂମିରେ ନପଡ଼େ ପଦ
ବସନ ନରହେ ହୋଇ ସ୍ଥିତ ଗୋ
ଧନ୍ୟ ଗୋ
କି ଶ୍ରୀପଦ କଥ ରସବତି !
କ୍ଷଣେ ଶ୍ରୀଗ୍ରାମିଣି ଗଜଗତି ଗୋ ।୩।

## ନାୟିକା ଉକ୍ତିଃ

ଶ୍ଲୋକଃ

**ଶ୍ରିୟାଧୃତଂ ବକ୍ଷସି ପ୍ରୀତି କନ୍ଦଳୈ-**
**ର୍ମୁନୀନ୍ଦ୍ରବୃନ୍ଦୈଃ ପରିସେବିତଂ ମୁଦା**
**ଦିବୌକସାମ୍ଭବବିଧୌ ସକୌତୁକଂ**
**ନମୋସ୍ତୁ ତେ ରାମ ତବାଙ୍ଘ୍ରିପଙ୍କଜମ୍ ।୧୬**

ଦୀର୍ଘ

ଜୟ ରାମ ଘନଶ୍ୟାମ     ନିଖିଳ ସୁଗୁଣଧାମ
ନମୋ ତବ କମଳ-ଚରଣ
ଲୋକମାତ ପ୍ରେମେ ରତ     ହୋଇ ଯାହା ଅବିରତ
ବକ୍ଷସ୍ଥଳେ କରନ୍ତି ଧାରଣ ହେ
ପ୍ରଭୁ ହେ
ବିରଞ୍ଚି ନିଷ୍ଟିନ୍ତ ଯାଁକୁ ଜପି
ତ୍ରିପୁରାରି ହୋଇଛନ୍ତି ତପୀ ହେ ।୧।
ସ୍ୱଭାବରେ ତୁମ୍ଭେ ଏକ     ହୋଇଣ ରୂପ ଅନେକ
ତନ୍ମୟରେ ବ୍ୟାପି ଅଛ ଜନ
ତେଜି ମନୁ ଅଭିମାନ     ଆନନ୍ଦରେ ନିଶି ଦିନ
ଯାଁକୁ ଜପୁଛନ୍ତି ମୁନିଜନ ହେ
ପ୍ରଭୁ ହେ
ସେହି ଦେବ ଅନାଦି ଅଚ୍ୟୁତ
କଳ୍ପତରୁ ଭକ୍ତ ବଶୀଭୂତ ହେ ।୨।
ନିଅ ସେ ଭକତ-ଧନ     କରୁଛୁ ସର୍ବେ ପ୍ରଦାନ
ବିନିମୟେ ପ୍ରେମ ଦାନ କର
କଳ୍ପତରୁ ପାଶେ ଅସି     ହେବୁଁ ଚିର ଉପବାସୀ
ସିନ୍ଧୁ ତୀରେ ତୃଷା ନୁହେ ଦୂର ହେ
ପ୍ରଭୁ ହେ
କାମଧେନୁ ପାଶେ କାମ ହତ
ଏ ତ ସିନା କର୍ମ ବିପରୀତ ହେ ।୩।
ବଜାଇ ଏ ବୀଣା ତାନ     ହଜାଇଲି ବୁଦ୍ଧି ଜ୍ଞାନ
ମଜ୍ଜାଇଲି ତବ ପ୍ରେମ-କୂପେ

ରାଜାର ନନ୍ଦନ ପରା       ସଜା ଦେଉଛ ଏ ଧୀରା
ଲଜ୍ଜା ନାହିଁ କହ କେଉଁ ରୂପେ ହେ
ନାଥ ହେ
ଦୀନବନ୍ଧୁ ଥାଉ ଦୁଃଖ ଛମ
ପ୍ରାପ୍ତି ଅସେ ଯେଉଁପର ଯମ ହେ ।୪।
ଅମ୍ଭେ ସହଜେ ଅବଳା       ବଳାତ୍କାରେ କଲ ଲୀଳା
କଳାକର ମୁଖ ହେଲା କଲେ
ଭେଳା ବୁଡ଼ିବ ଅଚଳ—       ଦୁଃଖ-ବାରିନାଥ-ଜଳ
ଆକୁଳ ଅନ୍ତରେ କହୁଁ ବଳେ ହେ
ନାଥ ହେ
ଅନାଥ ନକର ରଘୁନାଥ
ଦୁଃଖେ ନୀଳକଣ୍ଠ ଯୋଡ଼େ ହାତ ହେ ।୫।

ଊହା

ରଘୁନାଥର ନିଷ୍ଠୁର ବାଣୀ
ସକଳେ ଆକୁଳ ହେଲେ ଶୁଣି ।୧।
ମାନଭରେ ନେଇ ଥନ ଥନ
ନୟନରୁ ବହି ପଡ଼େ ବନ ।୨।
ନଖେ ଚିତ୍ରୁଛନ୍ତି ବସୁନ୍ଧରା
କହି ଅହା ରାମ ହୃଦ ହାରା ।୩।

## ଚତୁଷ୍ପଦୀ

ଏ କି ରୀତ ରଘୁପତି ମତରେ ବର୍ତ୍ତର ହେ
ରାତରେ କତରେ ଡ଼ାକି କର ନାରଖାର ହେ ।୦।

ମୋହନ ବୀଣା ବଜାଇ    ଚିତ୍ତ ଧୃତକୁ ହଜାଇ
କେ କହିଲ ସମଜାଇ ହେଲ ତ ନିଷ୍ଠୁର ହେ ।୧।
କଳ୍ପତରୁ କଳ୍ପନାରେ    ନଥିଲ ଏ ଜଳ୍ପନାରେ
ଅଳ୍ପ ଅଳ୍ପ ଦୟା ହେଉ କୃପା-ଅକୂପାର ହେ ।୨।
ମୋକ୍ଷ ଦାତା ଲକ୍ଷ ଲକ୍ଷ    ଈକ୍ଷଣ ମାନେ ପ୍ରତ୍ୟକ୍ଷ
ନୀଳ-ନଳିନାକ୍ଷ ଦକ୍ଷ ହେଲେ ପରତ୍ର ହେ ।୩।
ତେଜ ସକଳ ବିଷୟ    ହେଜ ପାଦପଦ୍ମ ଦ୍ୱୟ
ମଜ୍ଜି ତୋ ନାମ ସିନ୍ଧୁରେ ନୀଳ ହେବ କା'ର ହେ ।୪।

ଶ୍ଳୋକଃ

**ଅଧୁନା ସ୍ମର, ମାରସୁନ୍ଦର**
**ଅବତାରାନ୍ତରସତ୍ୟଭାରତୀଂ**
**କମଳା ହୃଦ ପଦ୍ମ ସଂସ୍ଥିତ !**
**କୁସୁମେଷୁସୁବିଶାଳପଣ୍ଡିତ ! ୧୭**

ଦୀର୍ଘ

ହେ ସ୍ମରଜିତ ସୁନ୍ଦର    କରୁଛ କେତେ ଦ୍ୱନ୍ଦର
ମନ୍ଦର ପର୍ଯ୍ୟେ ହୃଦ କର
ଛନ୍ଦରେ ଏବେ ପକାଅ    ପଦ୍ମାରବଦ୍ୟୁସୀରଯ୍ୟୁ
ଚନ୍ଦ୍ରମୁଖ ମନ୍ଦ ଭାବ ଧର ହେ
ରଘୁନନ୍ଦନ
ବଳାରାତି-ବନ୍ଦନ ହେ କଳା—
କୁନ୍ତଳିଅ ଦଶରଥବଳା ହେ ।୧।
ଶଙ୍କା ନାହିଁ ଚତ୍ତେ ଏକା    ସତ୍ୟଯୁଗେ ବଦସ୍ୱୀକା
ଯଜ୍ଞବେଦୀ ବିଜ୍ଞ ଚୂଡ଼ାମଣି

ଅଙ୍କ ପର ଏବେ କହ ମୋଠାରେ କି ତୁମ୍ଭ ସ୍ନେହ
ସାକ୍ଷୀ ତହିଁ ଥିଲେ କମଳିନୀ ହେ
ରଘୁନନ୍ଦନ
ରସିକ-ମଣ୍ଡଳି-ଅଳଙ୍କାର
ରସରାଜ ଏ କି ଅବ୍ୟବହାର ହେ ।୨।
କମଳା ହୃଦ-ପଙ୍କଜ— ବାସୀ ଅହେ ଦେବରାଜ
ଅସି ନାହାନ୍ତି ସେ ପଦ୍ମାଳୟା
ଥିଲେ ସେହି ସାରସାକ୍ଷୀ ହୁଅନ୍ତେ ଏଥକୁ ସାକ୍ଷୀ
ଦୟାମୟ ହେଉ ଏବେ ଦୟା ହେ
ରଘୁନନ୍ଦନ
କ୍ଷୀଣା ସ୍ୱନେ କ୍ଷଣା ଯାଉ ମନ
ସୁଲକ୍ଷଣା ଆସନ୍ତୁ କାନନ ହେ ।୩।
ସେବାରୁ କରିଲେ ଭିନ୍ନ ଦେବାରେ କି ପ୍ରୟୋଜନ
ଜୀବନେ କି ଆଉ ଅଛୁ ଆଶ
ଗଜେନ୍ଦ୍ରୁ ଅଛୁ ତଟିନୀ ସରସ୍ୱୁ ମନ୍ଦ ଗାମିନୀ
ନିଷ୍ଠେ ତାର ନୀରେ ଦେବୁଁ ଝାସ ହେ
ରଘୁନନ୍ଦନ
ରସିକ-ମଣ୍ଡଳି-ଅଳଙ୍କାର
କଳଙ୍କଟି ହେବ ସିନା ସାର ହେ ।୪।

ତୁହା

ଅହେ ରଘୁନାଥ ରସରାଜ
ବନରୁ କରୁଛୁଁ ନାରୀ ବ୍ରଜ ।୧।
କନକ ଅଙ୍ଗୀ ଜନକ ଜେମା
ତୁମ୍ଭେ ନାରାୟଣ ସେ ଯେ ରମା ।୨।

ଆମ୍ଭ କରମକୁ ସାକ୍ଷୀ ସେହୁ
ଦୟା କର ଅଣ ଭାବଗ୍ରାହୁ ! ।୯।

ଶ୍ଳୋକଃ

**ଅନନ୍ତରଂ ଶ୍ରୀ ରଘୁବଂଶ ଚନ୍ଦ୍ରଃ**
**ପ୍ରିୟେ, ସୁନେଣେ ଲଳିତେ ସୀତେତି**
**ବବାଦ ବୀଣାଂ ମଦନାଭିରାମ**
**ଆଗଚ୍ଛ ଭଦ୍ରେ ହୃଦୟେଶ୍ୱରିତ୍ୱମ୍ ।୧୬**

ପୟାର

ସୀତା ଭାବେ ମଧୁରାବେ ବାଜେ ସେହୁ ବୀଣା
ଅଗୋ ସୀତେ ତୁ ଲକ୍ଷିତେ ଅସ ଅସ କ ନା ଗୋ ।୧।
ମୋତେ ପିତା ଅଗୋ ସୀତା ତୋ ବିନେ ସଂସାର
ସୀତା ଜ୍ଞାନ ସୀତା ଧ୍ୟାନ ସୀତା ହୃଦ-ହାର ଗୋ ।୨।
ସୀତା ଧନ ମୋ ଜୀବନ ସୀତା ମୋ ପରାଣ
ସଦା ସୀତା ନାମେ ଚିନ୍ତା କରେ ମୁଁ ଧାରଣ ଗୋ ।୩।
ଶୟନରେ ଅୟନରେ ପୁଣି ସ୍ୱପନରେ
ଜାଗରଣେ ସଦା ଭଣେ ସୀତା ମୁଁ ମନରେ ଗୋ ।୪।
ସୁଧାଠାରୁ ଅତି ଗୁରୁ କର୍ଣ୍ଣରସାୟନ
ଭାବମୟ ସମୁଦାୟ ସୀତା ତୋର ନାମ ଗୋ ।୫।
ଅସ ଅସ ନାରୀ ବଂଶ-ପୂର୍ଣ୍ଣିମା-ଚନ୍ଦ୍ରିକା
ଗୁରୁଶୀଳା ! ନବବାଳା ପ୍ରେମ-ପ୍ରଦାୟିକା ଗୋ ।୬।
ଖଞ୍ଜନ ଗଞ୍ଜନେକ୍ଷଣା ଚିତ୍-ଉଲ୍ଲାସିନୀ
ଅନକ-ଶୋଭ ! କନକ-ଦେହା ସୁହାସିନ ! ଗୋ ।୭।

ଶତପତ୍ର-ଜିତ-ନେତ୍ର କୁଟିଳ-କୁନ୍ତଳେ !
ମଦନ-ମଦ-ବର୍ଦ୍ଧନ ! ରଞ୍ଜନେ ସରଳେ ! ଗୋ ।୮।
ଅସ କାଶହାସି ! ସ୍ମିସ-ସ୍ଥଳୀ-ମନୋରମା
ଭକ୍ତ, ପ୍ରୀତ, ଗୁଣବତୀ ଦୟାଶୀଳା ରମା ଗୋ ।୯।
ବାରମ୍ବାର କରେ ସ୍ତବ ସୀତା ସୀତା ରବେ
ମୁଁ ବାତୁଳ ବୋଲେ ମୋର ସେହି ପ୍ରେମ ଭାବେ ଗୋ ।୧୦।

ଶ୍ଳୋକଃ

**ବୀଣାସ୍ୱନଂ ସୁଲଳିତଂ ପରିପୀୟ ସୀତା**
**ପୂତେନ ଶ୍ରୋତ୍ର ଯୁଗଳେନ ବିହାୟ ନିଦ୍ରାମ୍**
**ଅସ୍ମିନ୍ ମଧୌ ସ୍ମରତି ମାଂ ରଘୁବଂଶନାଥଃ**
**ରାମସ୍ୟ ଚେତି ପ୍ରବିଚିନ୍ତ୍ୟ ଗତା ସମୀପମ୍ ।୧୮।**

ଯଥା ରାଗ

ରତନ ପଲଙ୍କେ ରଘୁନାଥ-ଅଙ୍କେ
ପହୁଡ଼ି ଥିଲେ ସୁନ୍ଦରୀ ହେ
ଶୁଣି ବୀଣା ନାଦ ଭାଜିଗଲା ନିଦ
ଆଲିଙ୍ଗନ ଇଚ୍ଛା କରି ହେ
କର ଦିଅନ୍ତେ ବଢ଼ାଇ
ପାଶେ ନାହାନ୍ତି ପରାଣ ସାଇଁ ହେ ।୧।
ଚିନ୍ତାପଦ ଚିନ୍ତା କରି, ଦେବୀ ସୀତା
ଜାଣିଲେ ବସନ୍ତ କାଳ ହେ
ବିହାରକୁ ମନ କରିଲେ ବହନ
ପଦ୍ମମୁଖ ରଘୁବାଳ ହେ
ତେଣୁ ମୋହ ନାମ ଧରି
ବୀଣା ସ୍ୱନେ ଡାକୁଛନ୍ତି ହରି ହେ ।୨।

ଉଠି ଦେବୀ ଖରେ　　　କଣ୍ଠେ ଭୈରବ ସ୍ୱରେ
ଚଳିଲେ ଗଜଗମନା ହେ
ଯୋଗମାୟାଶ୍ରିତ　　　ସରବେ ନିଦ୍ରିତ
ରମେ ହୋଇ ଧ୍ୟାନମନା ହେ
ଚଳୁ ବାଜିଲା କିଙ୍କିଣୀ
ମୃଦୁ ପଦେ ହୋଇ କିଣି କିଣି ହେ ।୩।

ଉର ଚନ୍ଦ୍ରହାର　　　ନାଚେ ଧୀର ଧୀର
ଜିବା ଗଙ୍ଗା ଶମ୍ଭୁଶିରେ ହେ
ଶାଢ଼ୀର ଅଞ୍ଚଳ　　　ଉଡ଼ିଲା ଚଞ୍ଚଳ
ମନ୍ଦ ମନ୍ଦ ପବନରେ ହେ
ସୁଖେ ବନ ଦେବୀ ଗଣ
ଶିରେ କଲେ କୁସୁମ ବର୍ଷଣ ହେ ।୪।

ଅବଭୃଥ ଛନ୍ଦେ　　　ଅମରେ ଆନନ୍ଦେ
ବରଷିଲେ ଗଙ୍ଗାନୀର ହେ
ପାରିଜାତ ହାର　　　ଫିଙ୍ଗି ସୁନାଶୀର
ସ୍ତୁତ କଲେ ଯୋଡ଼ିକର ହେ
ଋଷିଗଣେ ହସି ହସି
ଯୋଡ଼ କରେ ସ୍ୱସ୍ତି ସ୍ୱସ୍ତି ଭାଷି ହେ ।୫।

ଖରେ ଶ୍ୟାମ-ବନେ　　　ଖେଳିଗଲା ଘନେ
ଶତ କୋଟି ସୂର୍ଯ୍ୟ ପ୍ରଭା ହେ
ନାୟିକା-ସକଳ—　　　ଶ୍ରୀମୁଖ-କମଳ
ଦର୍ଶିଲା ଅପୂର୍ବ ଶୋଭା ହେ
ଦେଲେ ହୁଳହୁଳି ମୁଖେ
ପିକ-ସଙ୍ଗୀତ ଗାଇଲେ ସୁଖେ ହେ ।୬।

କର ବନ୍ଦାପନା ସକଳ ସୁମନା
ପଦ୍ମଶ୍ରୀ ମଣାଇଁ ନେଲେ ହେ
ରାମ ବାମେ ରାମ— ନୟନାଙ୍କ ଧାମ—
କରାଇ ଆନନ୍ଦ ହେଲେ ହେ
ଘନ ପାଶେ ସୌଦାମିନୀ
କିବା ଶଶାଙ୍କ ପାଶେ ରୋହିଣୀ ହେ ।୭।
ନୀଳ-ଯମୁନାର କଲ୍ଲୋଳେ କି ଧୀର
ମିଶିଲା ଜାହ୍ନବୀ-ଧାର ହେ
ପ୍ରଭୁ ପାଶେ ଦେବୀ— ଶୋଭା ଅନୁଭବି
ଏ ପାପୀ ପ୍ରାଣ ଉଦ୍ଧାର ହେ
ହେବ ଭାବେ ସଦାକାଳେ
ସୀତା ରାମ ନୀଳକଣ୍ଠ ହେଲେ ହେ ।୮।

ଶ୍ଳୋକଃ

**ସୀତାରାମୌଚ ବନ୍ଦେଽହଂ କୌଶଲ୍ୟାନନ୍ଦବର୍ଦ୍ଧନୌ**
**ଘନକ୍ଷଣପ୍ରଭାକାନ୍ତି ତପିଭିଃ ପରିସେବିତୌ ।୧୯**

ବନ୍ଦାପନା

(ବୃନ୍ଦାରଣ୍ୟ ସାର୍ବଭୌମ ମୂରତି ବାଣୀରେ)

ଅଯୋଧ୍ୟାର ସାର୍ବଭୌମ ମୂରତି, ହେ ସୀତାରାମ
ରାଣୀ କୌଶଲ୍ୟାଙ୍କ ନେତ୍ର ସମ୍ପତ୍ତି, ହେ ସୀତାରାମ ।୧।
ଶତଦଳ-ରୁଚି-ଜିତ-ଚରଣ, ହେ ସୀତାରାମ
ଦେବ, ନର, ନାଗ, ଅନୁସରଣ, ହେ ସୀତାରାମ ।୨।
ପ୍ରବାଳ-ଅଧରେ ମଧୁର ହାସ, ହେ ସୀତାରାମ
ଶ୍ରୀଅଙ୍ଗେ ଜଡ଼ିତ ସୁନ୍ଦର ବାସ, ହେ ସୀତାରାମ ।୩।

ଅମୃତରୁ ବଳେ ବଚନ ରାଶି, ହେ ସୀତାରାମ
ନାକେ ପୁରନ୍ଦରୀ ହୋଇବେ ଦାସୀ, ହେ ସୀତାରାମ ।୪।
ନୀଳ ମେଘେ ନବ ବିଜୁଳି ପରି, ହେ ସୀତାରାମ
ଦେବ ଦେବୀ ଶୋଭା ନାହିଁ ନିସ୍ତରି, ହେ ସୀତାରାମ ।୫।
ଆସ ଅସ ନବ ପ୍ରେମେ ହରଷେ, ହେ ସୀତାରାମ
ନୀଳକଣ୍ଠ ମନ ସେ ପାଦେ ରସେ, ହେ ସୀତାରାମ ।୬।

---

## ସୀତୋବାଚ

ଶ୍ଳୋକଃ

**ଅଥ ଶ୍ରୀ ଜାନକୀ ଦେବୀ ସଂଯୁକ୍ତକରପଲ୍ଲବା**
**କଥୟାମାସ ରାମାୟ ଆହ୍ଲାଦଂଚ ସନ୍ଦେହତୁକମ୍ ।୨୦**

ଝିଙ୍କ

ସରସରେ ହରଷରେ ଏ ରସରେ ହତ !
ଦୃଅ ମନ ପଞ୍ଚାନନ ଧୀରେ ବୋଲୁଛନ୍ତି ହେ ।୧।
କୋରକୀତ କର ପୀତ ବସନ ପାରୁଶେ
କରି ଯୁଗେ ଯେ ସୋହାଗେ ଧଇଥିଲି ଭାଷେ ଗୋ ।୨।
ଯୋଗେଶ୍ୱର ଏ କି ତୋର ନବ ଆୟୋଜନ
ପ୍ରେମଭର ମନ ମୋର ଧନ୍ୟ ଏ ଜୀବନ ହେ ।୩।
ସଖୀଗଣ କରି ମାନ ହୋଇଛନ୍ତି ଉଭା
କିବା ଦୋଷ ପଦ ଦେଶ ସେବାକାରେ ଅବା ହେ ।୪।
ମନେ କର ହେ ସୁନ୍ଦରବର ଚୂଡ଼ାମଣି
ଯୁଗେ ଯୁଗେ ପଦ ଭାଗେ ସେବନ୍ତି ରମଣୀ ହେ ।୫।

ମନେ ହୁଏ କି ଉଦୟେ ବାସନ୍ତିକ ରାସ—
ଲୀଳା ଯେତେ ତେଣୁ ସତେ ଆସିଲେ ଏ ପାଶ ହେ ।୬।
ରତ୍ନାକର ହେ ନାଗର ପୂରନ୍ଦର ହର
ଜଣେ ଜଣେ ଚୁମ୍ବଦାନେ କୋଳାଗ୍ରତ କର ହେ ।୭।
ସତ୍ୟଯୁଗ ଲୀଳା ଯୋଗ ତୋର ମନେ କର
ଏତେ ଖରେ ପ୍ରତଜ୍ଞାରେ ହୋଇଲ ପାସୋର ହେ ।୮।
ସବୁ ଜାଣି ତୁ ନଜାଣି ରହୁ କେଉଁପର
ବୀଣା ସ୍ୱନେ ଡ଼ାକ ଏଣେ କି ଅଛୁ ବଧିର ହେ ।୯।
ଦେବୀ ବାଣୀ ରଘୁମଣି ଅଶ୍ରୁଝିରେ ଶୁଣେ
ସୀତାରାମ ଅବିରାମ ଭାବ ନୀଳ ଭଣେ ହେ ।୧୦।

ଶ୍ଳୋକଃ

**ଅଧୁନା ତବ ବାକ୍‌ବାଣଃ ସନ୍ଦେହ ପର୍ବତଂ ମମ**
**ଛେଦୟାମାସ ଭୋ ଦେବି ! ଯଥେଚ୍ଛସି ତଥାସ୍ତୁ ।୨୧**

ଦୀର୍ଘ

ଧନ୍ୟ ହୃଦୟ-ଚନ୍ଦ୍ରିକା ସୀତେ ! ପ୍ରେମ-ପ୍ରଦାୟିକା
ଧନ୍ୟ ଦେବ ! ତବ ବାକ୍ୟ-ବାଣ
ସଂଶୟ-ପର୍ବତ ମୋର ଭେଦ କରି ଦେଲା ଦୂର
କି ଇଚ୍ଛା ତୁମ୍ଭର ପ୍ରିୟେ ପୁଣ ଗୋ
ମୀନ ନୟନା
କମ୍ବୁକଣ୍ଠି ଜମ୍ବୁନଦ ଦେହା !
ଶମ୍ଭୁସ୍ତନା, କହ ହୋଇ ସ୍ନେହା ଗୋ ।୨।
ତୁମ୍ଭେ ଶଶୀ ମୁଁ କୁମୁଦ ଚାତକ ତୁମ୍ଭେ ପୟୋଦ
ଭାଷ କାଶହାସି ! ଅନନ୍ତର

ଏ ଯେତେ ନବ ନାୟିକା ଶୁଦ୍ଧ-ପ୍ରେମ-ପ୍ରଦାୟିକା
ବାଣୀସ୍ୱନେ କରଲେ ଅନ୍ତର ଗୋ
ମୀନ ନୟନା
ବିଷୟକୁ ବିଷ ମନେ କର
ପାଦପଦ୍ମେ ଛନ୍ତି ଅବଧାରି ଗୋ ।୨।

ଭୂଷା

କହ ପ୍ରିୟେ କାମ କଳ୍ପଲତା
ଚନ୍ଦ୍ରହାସି ! ଜନକ-ଦୁହିତା ।୧।
ତବ ବାକ୍ୟେ ହେଲି ଅତି ପ୍ରୀତ
ଅୟି ହୃଦେଶ୍ୱରି ! ପଞ୍ଚଭୂତ ।୨।
ତୋ ଭାବେ ମୁଁ ବଶ ନିଶିଦିନ
ସୀତା ସୀତା ମୋର ଜ୍ଞାନ ଧ୍ୟାନ ।୩।

ଶ୍ଳୋକଃ

**ଅନୁଗୃହାଣ ମାଂ ଦେବ ! ବସନ୍ତ ସମୟେଧୁନା**
**ପ୍ରକାଶୟତାତ୍ ପ୍ରାଚୀନାଂ ରାସଲୀଲାଂ ଯଥାଯଥମ୍ ।୨୨**

ଖର୍ବ

ଜୟ ରାମ ଘନଶ୍ୟାମ ପୀତବାସ ଧୃତ
ହେ କିଶୋର ରସସାର ମୂର୍ତ୍ତି ବିରାଜିତ ହେ ।୧।
·କୋଟି କାମ ଅଭିରାମ ରସିକ ମୋହନ
ଜୟ ଜୟ ଅପ୍ରମେୟ ଜଗତ-ନିଦାନ ହେ ।୨।
ଜୟ ଶୁଦ୍ଧ ଜୟ ବୁଦ୍ଧ ସତ୍ତ୍ୱ, ରଜ, ତମ,
ନିରଞ୍ଜନ ସନାତନ ପ୍ରକୃତି ପରମ ହେ ।୩।

ଅନୁଗ୍ରହ ହେ ବିଗ୍ରହଧାରି ! ଥରେ କର
ପୂର୍ବତନ ଲୀଳାମାନ ମାନସେ ସ୍ମର ହେ ।୪।
ଦାସୀ ଭାବେ ଅମ୍ଭେ ସର୍ବେ ପଦ ସେବାକାଂକ୍ଷୀ
ଆସ ଆସ ସେହି ରାସଲୀଳା ସ୍ଥଳେ ହରି ହେ ।୫।
ଆମୋଦିତ କରେ ଚିତ୍ତ ମଳୟ ପବନ
ଫୁଲ ଫୁଟେ ବାସ ଛୁଟେ ଅଳି କରେ ଗାନ ହେ ।୬।
ବାସନ୍ତିକ ଲୀଳାଯାକ କର ସୁପ୍ରକାଶ
ଭାବେ ମିଳି ଅବିରଳ ଶ୍ରୀପଦ-ସାରସ ହେ ।୭।

## ଚତୁଷ୍ପଦୀ

ରସରାଜ ମୂରତି ଆଜ ସତେ ହଠହଠା କାଢ଼ି ଦେବ କି ?
କିଙ୍କରୀ ଚକୋରୀ ଦ୍ୱିଜରାଜ ବିନେ କେଉଁପରି ପ୍ରାଣ ରଖିଥିବ କି ?୦।

ଚଖାଇଲ ପ୍ରୀତି-ମଧୁର
ମଖାଇଲ ପ୍ରେମ-ସିନ୍ଦୁର
ରଖାଇଲ ନାହିଁ ପଖା ଧରିବାକୁ
ଲେଖା କେଉଁଥିରେ ଦାସୀ ହେବ କି ? ।୧।

ଛଣା ପଣା ଦିଆଇ କରେ
ବଣା କଲ ଏ କାନନରେ
ଅଣାଇଲ ପରି ଭଣାଇଁ ଚତୁରୀ
ସେବା ବିନେ କାହା ଜୀବ ଥିବ କି ? ।୧।

କୁଣ୍ଠ କର ମୁକୁଟଧାରି !
ଉତ୍କଣ୍ଠେ ଏ ଦେଖୁଛୁ ଭାରି
ସଙ୍କଟ ତାରିଣି ନାଟ ଆଚରଣି
ଝୁଟ ସେ ନୟନେ ନଠାରିବ କି ? ।୩।

ନଠେ ଫୁଲ୍ ଖଠେ ହରଷେ
ଝଠେ ସତେ ବସିବ ପାଶେ
ଛଠକରେ କଷ୍ଟ ବିନଷ୍ଟ ନୋହିଲେ
କଣ୍ଠ କାପଁ ଅନୁସର ଥିବ କା ? ।୪।

ଶ୍ଳୋକଃ

**ତାଂ ତଥା କୃପୟାବିଷ୍ଟଃ ପ୍ରହସନ୍ନିବ ଶ୍ରୀହରିଃ**
**ଶାନ୍ତୟାମାସ ସକଳାଂ ଯୋଷିତଂ ମନ୍ଦରସ୍ତନାମ୍ ।୨୩**

ଯଥା ରାଗ

ସୀତା ମୁଖୁ ଶିତା— ସୁମଧୁର କଥା
ବାଣୀ ଶୁଣି ରଘୁନାଥ ହେ
କରୁଣା-ଜଳଧି ନିମିଷେକେ ଦ୍ରବି
ହେଲେ ଦରହାସଯୁକ୍ତ ହେ
ମନ୍ଦେ ମନ୍ଦେ ଛନ୍ଦେ ଛନ୍ଦେ
ନାଚି କହନ୍ତି ପ୍ରେମ ଆନନ୍ଦେ ହେ ।୧।
ଗୋ ମନ୍ଦର ସ୍ତନେ ଚନ୍ଦ୍ରମା ବଦନେ !
ପନ୍ଦର ବୟୁସୀ ବାଳେ ଗୋ
ମୁଁ ନୁହେ କାନ୍ଦର ଏହିଟି ସୁନ୍ଦର
ଭକ୍ତ ମୋର କାଳେ କାଳେ ଗୋ
ପ୍ରଭୁ ପଣେ ଥାଏ କରି
ନୁହ ଅର୍ଧାଙ୍ଗି ଅରୁଣାଧରି ! ଗୋ ।୨।
ତୁମ୍ଭେ ମୋର ଧନ ମୁଁ ତୁମ୍ଭ ଜୀବନ
ତୁମ୍ଭେ ଦାସୀ ମୁହିଁ ପ୍ରଭୁ ହେ

ଝୁଅ ତୁମ୍ଭେ, କାଶ— ହାସି ! ଜଳ ଗ୍ରାସ
ମୁହିଁଟି ତୁମ୍ଭର ସବୁ ଗୋ
ରଙ୍ଗ ରାଜୀବ ଚରଣେ
ଚନ୍ଦଲେଖା ମୋ ସେବକପଣେ ଗୋ ।୩।
ନୂହ କାନ୍ଦ କାନ୍ଦ ମୋ ହୃଦୟ ଗୃନ୍ଦ !
ଛନ୍ଦ ଗୋ କୋମଳ କର ଗୋ
ଭୋଳ ହୋଇ ଗଲେ କହୁଛୁ ଚଞ୍ଚଳେ
ନୀଳକଣ୍ଠ ତତଧର ଗୋ
ଦେଖିବାକୁ ସେହି ସ୍ମିତ
ଜୟ ସୀତା ରାମ ରଘୁପତି ହେ ।୪।

ଡୁହା

ଶୁଣି ପ୍ରଭୁର ମଧୁର ବାଣୀ
ଆନନ୍ଦ ସକଳ ରମାମଣି ।୧।
ହସି ହସି କର ଯୋଡ଼ି ସ୍ତୁତି
ଆରମ୍ଭିଲେ ଜୟ ରଘୁପତି ।୨।
ଜୟ ବଂଶୀଧର ସୁମୋହନ
ରସରାଜ ମୂର୍ତ୍ତି ରଘୁନାନ ।୩।

ଶ୍ଲୋକଃ

**ପ୍ରସାର୍ଯ୍ୟ ବାହୂ ରଘୁବଂଶନାଥ**
**ଆଲିଙ୍ଗ୍ୟ ସର୍ବାଃ ସରସଂ ଚୁଚୁମ୍ବ**
**ରାମାଭିରାମଃ ସୁତରାଂ ସ ରାମଃ**
**ତାସାଂ ସୁବେଶଂ ସଫଳୀ ଚକାର ।୨୫**

ଯଥା ରାଗ

ବାହୁକୁ ପ୍ରସାରି    ମନ୍ଦ ମନ୍ଦ କରି
ସକଳ ରମଣୀ ଗଣେ ହେ
କଲେ କୋଳାଗତ    ରଘୁବଂଶ ନାଥ
ଚୁମ୍ବ ପ୍ରଦାନ ବଦନେ ହେ
ଯେ ଯେ ମଦନ-ସୁନ୍ଦର
ନାରୀ ମନ୍ତ୍ରଲେ କରି ହୃନ୍ଦର ହେ ।୧।

ଶ୍ୟାମ ନୀରଧରେ    ବେଷ୍ଟିତ କି ଖରେ
ନାଗରୀ-ବିଜୁଳି ଘୋରି ହେ
କିବା ଶ୍ୟାମ-ଶଶୀ    ଅତି ଶୋଭା ଦିଶି
ତାରା ପରିବେଶ ପରି ହେ
ଶ୍ୟାମ-ଅଟ୍ଟାଳିକା-ପାଶେ
ସ୍ୱର୍ଣ୍ଣ-ପ୍ରାଚୀର କି ରୁଚି ଦିଶେ ! ହେ ।୨।

ଚର୍ବିତ-ତାମ୍ବୁଳ    କେବା ହୋଇ ଭୋଳ
କରେ ଧରି ମୁଖେ ଭରି ହେ
କେ ଅବା ଚନ୍ଦନ—    ଚର୍ଚ୍ଚିତ-ବଦନ
ଅନାଇଁ ଲୁ ଧୀର କରି ହେ
କେବା ଜରିରୁ ଆଣି
ପ୍ରେମେ ଆପଣା ଅଙ୍ଗଭୂଷଣୀ ହେ ।୩।

ଚନ୍ଦନ-ବୋଳିତ    ବାହୁ-ସୁଲଳିତ
କିଏ ପ୍ରଭୁ କଣ୍ଠେ ଦେଇ ହେ
ନାନା ପଲ୍ଲବବନ୍ଧେ    ନାଚ କି ଆନନ୍ଦେ
ତାଦ୍ରିମି ତାଦ୍ରିମି ଥେଇ ହେ
କେବା କରେ ସ୍ତୁତି ଗାନ
କିଏ ସୁମନ କରେ ବର୍ଷଣ ହେ ।୪।

ଦେଖି ରାସ ରସ ଦେବେ ଶୂନ୍ୟ ଦେଶ
ହର୍ଷେ ଜୟ ଜୟ କଲେ ହେ
ଗନ୍ଧର୍ବ ଗଣ ଦୁନ୍ଦୁଭି ବାଦନ
ଅପସରାଏ ଗାଇଲେ ହେ
ଇନ୍ଦ୍ର ଚନ୍ଦ୍ର ନଇରୁତ
ଶିବ ଶିବା ହେଲେ ଭୋଳ ଚିତ୍ତ ହେ ।୫।
ଯେ ଯାହା ବାହନ ବରଜ ବହନ
ସଭେଁ କାନନେ ମିଳି ହେ
ସ୍ୱେଦୋଦ୍‌ଗମ ତନୁ ସଙ୍ଗତେ ଅତନୁ
ଦେଖୁଛନ୍ତି ରାସ କେଳି ହେ
ପ୍ରଭୁ ପରହାସଁ ଭାଷ
ନାରୀଗଣର ବାଣୀ ସରସ ହେ ।୬।
ହେଲେ ଅତି ଭୋଳା ସରବ-ଅବଳା
ଦେଖେ ନଚଇ ରାସ ହେ
ମଦନ ସୁନ୍ଦର ବରଣି ସୁନ୍ଦର
ପୁଣି କା ମଧୁର ହାସ ହେ
ନାଚି ଉଠଇ ଭ୍ରୂଲତା
ଅଧୋମୁଖୀ ହେଲେ ରସଲତା ହେ ।୭।
ବାମନେତ୍ରୀ ରାମ— ଅଙ୍ଗ ସଙ୍ଗଧାମ
ଲଭନ୍ତେ ଗର୍ବିତ ମନ ହେ
କେ ଭାବେ ମାନସ ମୋତେ ହୃଷୀକେଶ
କେବେ ନକରିବେ ଭିନ୍ନ ହେ
ମୁଁ ତ ଜନମରୁ କିଣା
ମୋର ନାମ ସଦା ଡାକେ ବୀଣା ହେ ।୮।

କେ ହେଲ ଚକିତ　　　　ମୁଁ ତ ରଘୁନାଥ
ଶ୍ରୀଅଙ୍ଗେ ଯାଉଛୁ ମିଶି ହେ
ଯଥା ତରୁ-କୋଳେ　　　　ଲୁଚ ଯାଏ ହେଲେ
ଲତା ରାଣୀ ମନ୍ଦେ ହସି ହେ
ମୁଁ ତ କୋକିଳ ଘରଣୀ
ସହକାର ମୋର ରଘୁମଣି ଗୋ । ୯ ।
କେ ଭାବେ ରଥାଙ୍ଗ—　　　　ଧାଏଁ ଭେଣ୍ଡି-ଭୃଙ୍ଗ
ମୁହିଁ ତ ନବ-କମଳ ହେ
ମୋ ଅଧର-ମଧୁ　　　　ଆଶା କର ବଧୂ—
ବଦନ ହୋଇବେ ମେଳ ହେ
କଣ୍ଠ ବୋଲେ ଗୋ ସଜନ !
ଗର୍ବ-ଗଞ୍ଜନ ମୋ ରଘୁମଣି ଗୋ ।୧୦।

## ଚତୁଷ୍ପଦୀ

ବାଳସନ୍ତ ବୟସେ— ସହି କେଡ଼େ ଶୋଭା ଦିଶେ ଗୋ ।
ଅମଳ କମଳ ଲୋଚନ ନୟନୀ ଶ୍ରୀ ରଘୁ ନନ୍ଦନ ପାଶେ ଗୋ ।୦।
ଖଞ୍ଜନ ନୟନୀ-ଅଞ୍ଜନ ଗାର
ଗଞ୍ଜି ଧାଏ କାମ ଧନୁ-ଟଙ୍କାର
ଶ୍ରୀପଦ କଙ୍କିଣି, ବାଜେ କଣି କଣି, ହାର ନାଚେ ଉରଦେଶ ଗୋ ।୧।
ଅଞ୍ଚଳ-ପତାକା ଚଞ୍ଚଳ ଭାବେ
ନିଶ୍ଚଳ ନହୋଇ ଚଳେ ସ୍ୱଭାବେ
ସରସ ରାଗିଣୀ, ଲୟ ତାନ ବାଣୀ, ନାଦ ଉଠେ ଶୂନ୍ୟ ଦେଶେ ଗୋ ।୨

ପିଚକା କେ ସିଞ୍ଚି ମାରଇ ତାଳ
ହୁଳହୁଳ ଦିଏ କେବଣ ବାଳୀ
ଆଳି ସଙ୍ଗେ ଭଳି, ଭଳି କେ ତମାଳି, ହାସ ପରିହାସ ଭାଷେ ଗୋ ।୩।
ବେଷ୍ଟିତ ସକଳ ବ୍ରଜାଙ୍ଗନା ଗଣ
ମଧ୍ୟେ ଦେଖ ସୀତା ରାମ ମିଳନ
ଶ୍ୟାମ ଅଙ୍ଗେ ଗୋରି,ତନୁ ଦିଶେ ଗୋରି,ନୀଳସେବା ପଦଦେଶେ ଗୋ ।୪

ଶ୍ଳୋକଃ

**ଏକୋଽପି ରାମୋ ମଦନାଭିରାମୋ**
**ରାସେଽନ୍ତରେଭୂତ୍ ବହୁରୂପ ଧାରୀ**
**ଭାବେ ବଶାନାଂ ରମଣୀଗଣାନାଂ**
**ମନୋରଥାନ୍ ତାନ୍ ସଫଳୀ ଚକାର ।୨୬**

ଗୀତ

ବେଣୁ ବେଳ ଯେ ପ୍ରବଳ ରାସ ନୃତ୍ୟ ରସ
ନାରୀଗଣ ମୃଗ୍ଧମନ ଲଭି ପ୍ରଭୁ ପାଶ ହେ । ୧
ତତ୍ତ୍ୱ ଜାଣି ଚାପପାଣି ଯୋଗେଶ୍ୱର ହରି
ହୋଇ ଏକ ସେ ଅନେକ ରୂପ ପୁଣି ଧରି ହେ । ୨
ଏକ ସଙ୍ଗେ କଥା ରଙ୍ଗେ କରନ୍ତି ବିହାର
ହାସରସ ପରିହାସ ଆନନ୍ଦ ଅନ୍ତର ହେ । ୩
କା'କୁ ଚୁମ୍ବ ସେ ବିଳମ୍ବ ପରି ପଦ୍ମ-ମୁଖ
କା'ର ସ୍ତନେ ମୋଦ ମନେ ଚାଳି ତୀକ୍ଷ୍ଣ-ନଖ ହେ ।୪
କା'ର ବାସ କୁଞ୍ଚି ହାସ ଭରେ ଦିଏ ହରି
ତାହା ମୁଖେ ମହାସୁଖେ ତାମ୍ବୁଳକୁ ଭରି ହେ । ୫

ଫୁଲ୍‌ଦାମ ପ୍ରଭୁ ସମ ଦେଇ  କାହ୍ନା ଗଳା
ବୀଣା ନାଦେ ମତ୍ତ ଭାବେ ନାଚେ କେ ଅବଳା ହେ । ୬
ମଣିଶିଳେ ବସି କୋଳେ କା'କୁ ଗୁହ୍ମୁଅଇ
ଚନ୍ଦ୍ର ନିଶା ମୃଦୁ ଭାଷା ହରଷେ ଭାଷଇ ହେ । ୭
ବେଲ୍ଲୁ ବେଲ ପରବଳ ନାନା  ପ୍ରେମରସ
କେ କଳିବ ବ୍ରହ୍ମା ଶିବ ନଜାଣନ୍ତି ଶେଷ ହେ । ୮
ହେର ହେର ଫେର ଫେର  ପ୍ରତ କୁଞ୍ଜମାନ
ମାୟାଧର ନାରୀଙ୍କର ମୋହି ନେଲେ ମନ ହେ । ୯
ଧର୍ମାଧର୍ମ  କର୍ମାକର୍ମ  ନାରୀ  ସ୍ୱଭାବରେ
ନୁହେ ବାର ସର୍ବ ଗୋପୀ ଗର୍ବିତ ମନରେ ହେ । ୧୦
ଧନ୍ୟ ଭକ୍ତ ଅନୁରକ୍ତ  ଦୀନ  ଜନବନ୍ଧୁ
ନୀଳ ଭାବ ସେ ରାଘବ-ପାଦ-ପଦ୍ମ-ମଧୁ ହେ । ୧୧

ଡୁହା

ନାରୀଗଣ ଗର୍ବ ବେଲ୍ଲୁ ବେଲ
ଆମ୍ଭ ଦାସ ପ୍ରଭୁ ଅଦମ୍ମୁଲ ।୧।
କେ ଭାବେ ମୁଁ ହେଲି ତାହାଙ୍କର
ମୋ ମନ  ହରିଲେ ଗୁମ୍ଫଧର ।୨।
ଏଣ୍ଟପର  ପ୍ରତ  ହୃଦେ  ସ୍ଥିତ
ମହା ଗର୍ବ ଜାଣେ ରଘୁପତ ।୩।

ଶ୍ଳୋକଃ

**ଅଥ ଯୋଗେଶ୍ୱରୋ ରାମୋ ଜ୍ଞାତ୍ୱା ତାସାଂ ତୁ ମାନସଂ**
**ବିହସ୍ୟ ଚିତ୍ତ ବୃତ୍ତିନାଂ ପର ଷାର୍ଥଂ ମନୋଦଧେ । ୨୬**

ପୟାର

ନାରୀ ଗର୍ବ ସେ ରାଘବ ସହି ନପାରିଲେ
ହସି ହସି ରଘୁବଂଶୀ ମାନସେ ଭାବିଲେ ହେ । ୧
ଏ ଅବଳାଗଣ କଳାକରମୁଖୀ ଧନୀ
ଯୁଗେ ଯୁଗେ ମୋହ ଭାବେ ହୋଇ ପାଗଳିନୀ ହେ ।୨
ଅଙ୍ଗ ସଙ୍ଗ କଥା ରଙ୍ଗ ଲଭି ସୁଚତୁରୀ
ମୋହ ଭାବକୁ ଅଭାବ ମଣନ୍ତି ସୁନ୍ଦରୀ ହେ । ୩
ମୋତେ ପାଇ ମନେ ଏହି ହୋଇଲେ ଗର୍ବିତ
ଭକ୍ତ ଚିତ୍ତ ବୃତ୍ତି ସତ୍ୟ ହେବ ପରୀକ୍ଷିତ ହେ । ୪
ଏହା କଲେ ମୋତେ ହେଲେ ଭକ୍ତମାନେ ପ୍ରଭୁ
ଭାବେ ନୀଳ ରଘୁବାଳ ତୁ କେବଳ ସବୁ ହେ । ୫

ଡୁହା

ମନେ ଭାବେ ଯୋଗେଶ୍ୱର ରାମ
ନାରୀଗଣ ଗର୍ବ ଲଭି ପ୍ରେମ । ୧
ମୋର ବାନା ଏହି ରବିତଳେ
ଗରବ ଗଞ୍ଜନ ସଦା କାଳେ । ୨
ଭକ୍ତ ଚିତ୍ତ ବୃତ୍ତି ପରୀକ୍ଷାରେ
ମୁଁ ତ ନାନା ଅବତାର ଧରେ । ୩

ଶ୍ଳୋକଃ

**ତତୋ ମାୟାଧର ସ୍ତତ୍ର ରାସସ୍ଥଲ୍ୟାଂ ସ୍ୱମାୟୟା**
**ମନାଂସି ମୋହୟାମାସ ନାରୀଣାଂ ରଘୁନନ୍ଦନଃ । ୨୬**

ଖର୍ବ

ମାୟାଧର ମାୟା ଜାଲ ରୂପେ ପରକାଶି
ବେଢ଼ିଁ ବେଳ ନାରୀକୁଳ ମନ ନେଲେ ତୋଷି ହେ ।୧।

ସର୍ବେ ଭାବ ଧନ ଛବ ଆମ୍ଭର ପାରୁଶେ
ପ୍ରେମଭରେ ନୃତ୍ୟ କରେ ମଧ୍ୟସ୍ଥଳେ ରାସେ ହେ ।୨।
ଯେଉଁଣେ ଚାହିଁ ତେଣେ ସେହି ଦେଖି ରାମରୂପ
ରସମାରେ ପାରାବାରେ ବୁଡ଼ିଲେ ଏ ରୂପ ହେ ।୩।
ରାମ ଭାବେ ନାରୀ ସର୍ବେ ହେଲେ ମୋହମାନ
ନଜାଣନ୍ତି ରଘୁପତି ବିନେ ଅନ୍ୟ ଧନ ହେ ।୪।
କେ ଜାଣିବ ବ୍ରହ୍ମାଶିବ ଯା ମାୟାରେ ବଣା
ବୋଲେ ନୀଳ ମୁଁ କେବଳ ଚନ୍ଦ୍ର ରାମ ପିନା ହେ ।୫।

ଦୁହା

ଧନ୍ୟ ମାୟା କଲେ ମାୟାଧର
ଶିବ ବ୍ରହ୍ମା ଯାର ପରିଗ୍ରର ।୧।
ତାଙ୍କୁ କି ଜାଣିବେ ନାରୀ ଛାର
ମଣିଛନ୍ତି ସ୍ୱାମୀଭାବ ସାର ।୨।

ଶ୍ଳୋକଃ

**ଧୃତ୍ୱା ତାଂ ଜାନକୀଦେବୀଂ ପାଣିଭ୍ୟାଂ ମୃଦୁହାସିନୀଂ**
**ଅନ୍ତର୍ହିତୋଽଭବଦ୍ରାମଃ ସୁନ୍ଦରୀବୃନ୍ଦ ମଧ୍ୟତଃ ।୨୮**

ଯଥା ରାଗ

ଯୋଗେଶ୍ୱରଙ୍କର ମାୟାର ବିକାର
ଯୋଗେଶ୍ୱରୀ ପାର ଜାଣି ହେ
ତହୁଁ ରଘୁନାଥ ଭ୍ରୂଭଙ୍ଗୀ ଚଳାଇ
କରେ ଛନ୍ଦି ସୀତା ପାଣି ହେ
ନାରୀ ମଣ୍ଡଳକୁ ତେଜି
ଅନ୍ତର୍ଦ୍ଧାନ ହେଲେ ପଥ ହେଜି ହେ ।୧।

ମାୟାରେ ମୋହିତ ପ୍ରମୋଦିତ ଚିତ୍ତ
ନବୀନା ଯୋଷିତ ଗଣେ ହେ
ନାଚୁଛନ୍ତି ଭୋଳେ ପ୍ରଭୁ ସଙ୍ଗମେଳେ
ଭାବୁଛନ୍ତି ପ୍ରେମେ ମନେ ହେ
ସେ ତ ସହଜେ ଅବଳା
ମାୟାଧର ଦଶରଥ-ବଳା ହେ ।୨।
ଜାଣ ଭାବ ସାର କରିବାରୁ ପାର—
ହେବେ ଲଭି ଅପବର୍ଗ ହେ
ମିତ୍ର ଶତ୍ରୁ ଭାବ ପରମ-ସ୍ୱଭାବ
ନଜାଣି ଦିଅନ୍ତି ସ୍ୱର୍ଗ ହେ
ସେହି ଅଭିରାମ ମୂର୍ତ୍ତି
ନୀଳକଣ୍ଠ ଧ୍ୟାନ ଦିବାରାତ୍ରି ହେ ।୩।

ଶ୍ଲୋକଃ

**ମାର୍ଗଶୀର୍ଷେ ଶୁକ୍ଳପକ୍ଷେ ଷଷ୍ଠ୍ୟାଂ ପର୍ବବରେତିଥୌ**
**ରାମ ରାସୋତ୍ସବସ୍ୟାଦ୍ୟ ଶ୍ଚୋଲ୍ଲାସୋ ବିଗତଃ ଖଳୁ ।୨୯**

ପୟାର

ହେଲା ଶେଷ ରାମ ରାସ ପ୍ରଥମ ଉଲ୍ଲାସ
ଶୁକ୍ଳପକ୍ଷ ତଥି ଦକ୍ଷ ମାର୍ଗଶୀର ମାସ ହେ ।୧।
ରଘୁବର ପର୍ବ ସାର ଓଢ଼ଣ ଦିବସେ
ରାହି ଅର୍ଦ୍ଧ ପଦ୍ମପାଦ ଚିନ୍ତଣ ହରଷେ ହେ ।୨।
ଏକାକୀ ତ ହୋଇ ସ୍ଥିତ ମନ୍ଦିରେ ତାଙ୍କର
କରେ ଶେଷ ଏ ଉଲ୍ଲାସ ହରଷ ଅନ୍ତର ହେ ।୩।

ଅଣନିଶ ଶ୍ଳୋକେ ଶେଷ ହୁଏ ଏହୁ ଗାଥା
ପରାକୃତ ପଦସ୍ଥିତ କରନ୍ତେ ଗଣିତା ହେ ।୪।

ଶତ ଏକ ହେ ବିବେକ ନବେ ହୁଏ ବେଶି
ରତ୍ନାକର ରଘୁବର ପୂର୍ଣ୍ଣଚନ୍ଦ୍ର ରାଶି ହେ ।୫।

ଅହେ ସାଧୁ ଜ୍ଞାନମୟ ନିଷ୍କଳଙ୍କ ଜନେ
ମୁଁ ଶରଣ ଶ୍ରୀଚରଣ ତଳେ ନଶି ଦନେ ହେ ।୬।

କବିବର ପୀତାମ୍ବର ଜୟଦେବଙ୍କର
ପଦତଳେ ଅବିରଳେ ହେଉଛି କିଂକର ହେ ।୭।

ହୀନମତ ବୁଦ୍ଧି ବୃତ୍ତି ନାହିଁ ମୋର କିଛି
ପ୍ରଭୁ ଦୟା ଲାଗି ଯାହା ସାହସ ବାନ୍ଧିଛି ହେ ।୮।

କୃପାମୟୀ ରଘୁରାୟୀ ଶ୍ରୀମତୀ ଜାନକୀ
ପଦ ସେବା ବିନା ଅବା କେ ମୋର ଆନ କି ? ।୯।

ପିତାମାତା ଆଉ ଚିନ୍ତା ମୋର ଅଉ କିସ
ମକରନ୍ଦ ପାନେ ଅନ୍ଧ ନୀଳକଣ୍ଠ ଦାସ ହେ ।୧୦।

ଇତି ଶ୍ରୀ ହରଗୌରୀ ସମ୍ବାଦେ ଶ୍ରୀରାମ ବାସନ୍ତିକ ରାସ ବର୍ଣ୍ଣନେ
ପ୍ରେମଚନ୍ଦ୍ରୋଦୟୋ ନାମ ପ୍ରଥମୋଲ୍ଲାସଃ ।୦।

# ଦ୍ୱିତୀୟ ଉଲ୍ଲାସ

ଶ୍ଳୋକଃ

**ଦ୍ୱିତୀୟେ ବିରହାକ୍ରାନ୍ତା ଭ୍ରାନ୍ତା ରଘୁବରଂ ବିନା**
**ପୃଚ୍ଛେୟୁର୍ନାୟିକାଃ ସର୍ବା ବନସ୍ଥାନ୍ ପାଦପାନ୍ ଭୃଶମ୍ ।୧**

ଛନ୍ଦ

ଅହେ ସାଧୁ ଶୁଣ ସାଧୁ-ସଦନ ଚରିତ
ହେବ ଧ୍ୱଂସ କଳମଷ କଳିର ଭ୍ରମିତ ହେ ।୧।
ବରହିଣୀ ନାରୀ ଶ୍ରେଣୀ ରଘୁନାଥ ବିନେ
ସନ୍ତାପରେ ଶୋକଭରେ ଭ୍ରମିବେ କାନନେ ହେ ।୨।
ଲତାତରୁ ସେ ରମ୍ଭୋରୁ ପୁଚ୍ଛିବେ କାହାଣୀ
ଗଲେ କାହିଁ ରଘୁସାଇଁ ଆମ୍ଭ ପ୍ରାଣମଣି ହେ ।୩।
ପାଗଳମୀ ଯନ୍ତ୍ରବମୀ ନାନା ପୁଷ୍ପ ତୋଳି
ପ୍ରଭୁଙ୍କର ବାଲ୍ୟକାଳ ଲୀଳାମାନ ଭଳି ହେ ।୪।
ଦୁଃଖେ ଅତି ବନେ ଗତି କରୁଁ ନବ ଯୋଷା
ଏକାନ୍ତରେ ଜାନକୀରେ ଦେଖିବେ ସହସା ହେ ।୫।
ସୀତା ନେଇ ରଘୁସାଇଁ କରିବେ ବିଳାସ
ପରଶେଷେ ଯିବେ ତୋଷେ ତେଜି ତାଙ୍କ ପାଶ ହେ ।୬।
ଏ ଉଲ୍ଲାସରେ ବିଶେଷ ବିରହ ବିଳାପ
ଭାବେ ନୀଳ ରଘୁବାଳ ଚରଣ-କଳାପ ହେ ।୭।

ଦୁହା

ରାମ ପଦ ଯୁଗ ଭାବ ଭାବ, ଏ ଉଲ୍ଲାସ ଗାଥାକୁ ଗାଇବ ।୧।
ଦୟା କର ପ୍ରଭୁ ରଘୁବୀର, ନବଘନ ଶ୍ୟାମ ସଦାଧୀର ।୨।

ଶ୍ଳୋକଃ

**ତତଃପରଂ ଶ୍ରୀରଘୁନନ୍ଦନଂ ବିନା**
**ବିହାୟ ଲୀଲାଂ ବିରହେଣ ଯୋଷିତଃ**
**ବିଲୁଣ୍ଠ୍ୟମାନା ସକଲା ମହୀତଳେ**
**ଚକ୍ରନ୍ଦୁରୁଚ୍ଚୈ ରିତି ନାଥ ରାମ ହେ ।୨।**

ଦୀର୍ଘ

ଭ୍ରମର କେଶି ! ଅମର— ପୂରିତ-ଗୀତ ନିକର
କରଭୋରୁ ଖରେ ହେତୁକର,
କର ଧର କାନକାର ଅନ୍ତର୍ଦ୍ଧାନ ହେବାର
ହେଲେ ଯହୁଁ ବନ ଅଭ୍ୟନ୍ତର ଗୋ
ମୀନ ନୟନା
ମାୟା ହର ନେଲେ ମାୟାଧର
ଚେତା ଆସି ହେଲ ନାରୀଙ୍କର ଗୋ ।୧।
ନୟନ ଫିଟାଇ ବାଳୀ ଦେଖିଲେ ସେ ରାସସ୍ଥଳୀ
କେଳିକଳା-କୁଶଳୀ-ବହୀନ
ପୁଣି ଜୀବନର ସଖୀ ଜନକଜା ଚନ୍ଦ୍ରମୁଖୀ
ବଦନ ତ ହୋଇଛି ସ୍ୱପନ ସେ
ମୀନ ନୟନା
ଅହା ରାମ ଅହା ଗୁଣାକର
କହି ନୃତ୍ୟ ତେଜି ଶୋକଭର ସେ ।୨।
କେ ବକ୍ଷେ ତାଡଇ କର କାହାର ନୟନେ ନୀର
କେବା ଧରାତଳେ ଲୋଟିଯାଏ

କେ କହେ ହା ପ୍ରାଣନାଥ ଅହା ସର୍ବ ପୁରୁଷାର୍ଥ
ହେ ଶ୍ୟାମସୁନ୍ଦର ରଘୁରାୟ ହେ
ରଘୁନନ୍ଦନ
ଜନକଜା-ହୃଦୟ-ଚନ୍ଦନ
ଗୁଣରାଶି ଜଗତ-ବନ୍ଦନ ହେ ।୬।
ନାମଟି ଅମୃତୋପମ ତହିଁରୁ ବିଷ ଜନମ
ସେହ୍ୱ ପାନେ ପ୍ରାଣ ହେବ ନାଶ
ବଧି ଏ ଅବଳାଗଣ କିବା ଲଭିବ କାରଣ
କାହିଁ ଲୁଚି ଅଛ ଅସ ଆସ ହେ
ରଘୁନନ୍ଦନ
ଜନକଜା-ହୃଦୟ ଚନ୍ଦନ
ଗୁଣରାଶି ଜଗତ-ବନ୍ଦନ ହେ ।୭।
କେବା କ୍ଷଣେ ହେଲ ମୋହ କାହାର ଉଠିଲ କୋହ
କେ ଭୂଷଣ କରି ଦେଲ ଭଙ୍ଗ
କେବା ସ୍ମରି ରାମ ଗୁଣ ବିକଳେ କଲ କ୍ରନ୍ଦନ
ଧ୍ୱନିତ ହୋଇଲ ଶ୍ୟାମବନ ସେ
ରଘୁନନ୍ଦନ
ବନେ ହେଲ ଦଶଦିଗ ଶୂନ୍ୟ
ଘେନ ଘେନ ମୋର ନିବେଦନ ହେ ।୮।

ଶ୍ଳୋକଃ

**କ୍ୱାସି ନାଥ ! ରାମେତି ଦୁଃଖିନୀ ଦୁଃଖନାଶକ**
**କଥଂ ନା ଗଚ୍ଛସି ନାଥ ଚେତି ରାମା ବଦନ୍ତିହି ।୩**

## ଧାର୍ଦ୍ଧ

ହା ନାଥ ହା ପ୍ରାଣନାଥ  ହେ ରାମ ହେ ରଘୁନାଥ
ହେ ରମଣ ଜୀବଧନ ଆସ

ଶରଦଚନ୍ଦ୍ର ଲପନ  ଭାରତୀ ସୁଧା ସେଚନ
କର ଆମ୍ଭ କାତରତା ନାଶ ହେ
ନାଥ ହେ
ଅନାଥ ନକର ରଘୁନାଥ
ତୁମ୍ଭ ବିନା ସବୁ ହେଲ ବ୍ୟର୍ଥ ହେ ।୧।

ବଜାଇ ଦିଅ ହେ ବୀଣା  ହେଉ ଏ ମାନସ କ୍ଷୀଣା
ବାହୁଯୁଗ କର ଆଲିଙ୍ଗନ

ବିରହ-ସନ୍ତାପ ଜ୍ୱର  ହେ ଧନ୍ୱନ୍ତରୀ ଶେଖର
ପ୍ରେମ-ଔଷଧ କର ଦାନ ହେ
ନାଥ ହେ
ଦୂରେ ଯିବ ଏ ବିଷମ-ବ୍ୟାଧି
ଅହେ ରସସିନ୍ଧୁ ଦୟାନିଧି ହେ ।୨।

ପ୍ରେମମନ୍ତ୍ର ଦୀକ୍ଷା ଗୁରୁ  ହେ କାମନା କଳ୍ପତରୁ
ଅନଙ୍ଗ ପ୍ରତିମ ବୀଣାଧର

ଚରଣ ତଳେ ଶରଣ  ଦେଇ କଲ ଅକାରଣ
ଦାସୀଗଣ ଜୀବନ ମାତର ହେ
ନାଥ ହେ
ଅନାଥ ନକର ରଘୁନାଥ
ତୁମ୍ଭ ବିନେ ସବୁ ହେଲ ବ୍ୟର୍ଥ ହେ ।୩।

ଶ୍ଳୋକଃ

**ତ୍ୱନ୍ମାୟାଜାଲବିଭ୍ରାନ୍ତୌ ସ୍ୱୟମ୍ଭୂ ଶଙ୍କରା ବପି**
**ବୟଂ ନାର୍ଯ୍ୟଃ କଥଂଜ୍ଞେୟା ତବମାୟା ଦୁରତ୍ୟୟା ।୪**

ଦୀର୍ଘ

ହେ ଅନନ୍ତ ମାୟାଧର ତୋ ମାୟାଟି ଅଗୋଚର
ନଜାଣନ୍ତି ବ୍ରହ୍ମା ତ୍ରିପୁରାରି
ମାନସେ ଭାବନ୍ତ ନର ରୂପେ ତୁମ୍ଭେ ଅବତାର
ଆମ୍ଭେ ଅଟୁ ସିନା ଛାର ନାରୀ ହେ
ନାଥ ହେ
ତୋ ମାୟାରେ ହୋଇ ବିହ୍ୱଳିତ
କାହୁଁ ଜାଣିବୁ ତୋ ଦିବ୍ୟ-ତତ୍ତ୍ୱ ହେ ।୧।
ବରଦ ପରମେଶ୍ୱର ଯୋଗେଶ୍ୱରଙ୍କ ଈଶ୍ୱର
ନିରଞ୍ଜନ ହେ ଆଦ୍ୟ କାରଣ
ହେ କଳା କୁନ୍ତଳଧାରୀ ବଳାରାତି ବଶକାରୀ
ଛଳନା ନକର ଅକାରଣ ହେ
ନାଥ ହେ
ପାଦପଦ୍ମେ ପଶିଲୁ ଶରଣ
ନୀଳ ଚନ୍ଦ୍ରେ କୋଦଣ୍ଡ ଧାରଣ ହେ ।୨।

ଶ୍ଳୋକଃ

**ଅନନ୍ତରଂ ରାମ ନିବିଷ୍ଟଭାବା**
**ବିଳାସବତ୍ୟ ସ୍ଖଳିତା ବନାନ୍ତଂ**
**ପୃଚ୍ଛନ୍ତି ସର୍ବାନ୍ ରଘୁନାଥ ବାର୍ତ୍ତାଂ**
**କୁତ୍ରାପି ଦୃଷ୍ଟଃ କିମୁ ବାରିଜାକ୍ଷଃ ? ।୫**

ଯଥା ରାଗ

ରାମ ପ୍ରେମ ବଶ ହୋଇଣ ବିଶେଷ
ପାଗଳିନୀ ନାରୀଯୂଥ ହେ
ଲୋତକ ବହାଇ ସର୍ବ ଗୃହମୁହାଁ
ଭ୍ରମନ୍ତି କାନନ ପଥ ହେ
ତରୁ ଲତାଙ୍କର ପାଶ
ଦୁଃଖେ ପୁଚ୍ଛନ୍ତି ପ୍ରଭୁ ସନ୍ଦେଶ ହେ ।୧।
ଚାନ୍ଦ ବଦନ ସ୍ୱରୂପ ମଦନ
ଶ୍ରୀରଘୁନନ୍ଦନ ହରି ହେ
ଶ୍ୟାମଳ କୋମଳ ଏ ପଥେ ଚଞ୍ଚଳ
ଗଲେ କିବା ସହଚରି ! ଗୋ
ଦେଖିଥିଲେ କହ କହ
ରାମ ବିନେ କାମେ ଜଳେ ଦେହ ଗୋ ।୨।

ଶ୍ଲୋକଃ

**ମୃଗ୍ୟା ବିନା ରଘୁପତିଂ ବିପିନେ ଚରନ୍ତ୍ୟା**
**କା ପୃଚ୍ଛତୀହ ପନସାଶନକୋବିଦାରାନ୍**
**କାଚିଚ୍ଚ ଚମ୍ପକଲତାଂ କଳିକାଭିରାମାଂ**
**କାଚିଚ୍ଚ ଭୃଙ୍ଗସହିତାଂ ନବମାଳତୀଂ ବା ।୬**

ଯଥା ରାଗ

କେଉଁ ରସାତୁରୀ ହୋଇଣ ଆତୁର
ପୁଚ୍ଛେ ଶ୍ରୀରାମ ବାରତା ହେ

ପନସ ଅଶନ କଲ ଦରଶନ
କାହିଁ ପରାଣି କରତା ହେ
କୋବିଦାର କହ କହ
କେଉଁ କୁଞ୍ଜେ ଛନ୍ତି ଶ୍ୟାମ ଦେହ ହେ ।୧।
ଅଗୋ ଚମ୍ପା କଳି ତୁମ୍ଭେ ସଖୀ ଭଳି
କରିବ କି ଉପକାର ଗୋ
ସେ ଅଙ୍ଗ ଲଳିତ ତୁଅଇ କଳିତ
ଅଙ୍ଗୁଳି ତୁମ୍ଭ ପ୍ରକାର ଗୋ
ବାସେ ତୁମ୍ଭ ପରି ତନୁ
ଯାଙ୍କୁ ଦେଖି ହାରବେ ଅତନୁ ଗୋ ।୨।
ଗୋ ମାଳତୀ ବାଳେ ! ବସି ଭୃଙ୍ଗ-କୋଳେ
ପ୍ରେମରେ ହୋଇଛ ମଗ୍ନ ଗୋ
ତୁମ୍ଭେ ଥାଉ ପରି କର ଅମ୍ଭହରି
ଲୁଚିଲେ ରଘୁନନ୍ଦନ ଗୋ
ଜାଣିଥିଲେ ବାଣୀ କହ
ରାମ ବିନେ କାମେ ଜଳେ ଦେହ ଗୋ ।୩।
ତୋର କାନ୍ତ ଅଳି ସଙ୍ଗତରେ କେଳି
କରୁ ତୁ ହରଷଭରେ ଗୋ
କାନ୍ତ ପ୍ରେମ ରସ ବିହୀନରେ ତ୍ରାସ
ଲଭୁ ଆମ୍ଭେ ମାନସରେ ଗୋ
ଦୟା କରି କହ କହ
ରାମ ବିନେ କାମେ ଜଳେ ଦେହ ଗୋ ।୪।

ଶ୍ଳୋକଃ

**ଗୋବିନ୍ଦବଲ୍ଲଭେ ଦେବି ! ଭକ୍ତିଚୈତନ୍ୟକାରିଣି !**
**ରଘୁନନ୍ଦନ ସନ୍ଦେଶଂ ସଦ୍ୟଂ ବଦତନାଽଧୁନା ।୬**

ଯଥା ରାଗ

ଗୋବିନ୍ଦ ଗୃହିଣି ! ତୁଳସୀ କଲ୍ୟାଣି !
ଭକ୍ତ ଚୈତନ୍ୟ କାରଣୀ ଗୋ
ଆମ୍ଭ ବନ୍ଧୁ ରାମ ତୋ ମଞ୍ଜରୀ ଦାମ
ଗଳାରେ ଲମ୍ବାଇ ପୁଣି ଗୋ
ନାଚୁଥିଲେ ଆମ୍ଭ ସଙ୍ଗେ
ଏବେ କାହିଁଗଲେ କଥା ରଙ୍ଗେ ଗୋ ।୧।

ଅଗୋ ଜଗନ୍ନାଥ ତୁମ୍ଭ ଦୟାରେ ତ
ମିଳଇ ପରମ ଗତି ଗୋ
ବହୁ ହୃଦେ ଦୟା କହ ବସ୍ତୁ କାୟା
କାହିଁଛନ୍ତି ରଘୁପତି ଗୋ
ନବଘନ ଶ୍ୟାମ ରୂପ
ଆମ୍ଭ ମୋହନ ମାଦକ କୂପ ଗୋ ।୨।

କେ ବୋଲଇ ସଖି ! ତୁମ୍ଭେ ଦେଖିଲ କି ?
ପଡ଼ିଛି ଏଥି ମଞ୍ଜରୀ ଗୋ
ଅତି ସ୍ନେହଭରେ ତୋଳଣି ଶ୍ରୀକରେ
ଭବଗ୍ରାହୀ ଗୂଢଧାରୀ ଗୋ
ନିଷ୍ଟେ ଗଲେ ଏହି ପଥ
କହ ତୁଳସି ! ନୁହେ କି ସତ ? ଗୋ ।୩।

ପୁଣି ଖଣ୍ଡେ ଦୂରେ ଦେଖି ସୁମନରେ
କେ ବୋଲେ ନିଷ୍ଟୟ ସହି ଗୋ
ଫୁଲ ସ୍ଥାନେ ସ୍ଥାନେ ପଡିଛି ଯତନେ
ତୋଳିଛନ୍ତି ଭବଗ୍ରାହୀ ଗୋ
ସଖୀ-ଗଳେ ମାଳ କରି
ଦେଇଛନ୍ତି ପରି ସହଚରି ! ଗୋ ।୪।

ଧନ୍ୟ ସେହି ବାଳୀ  ବୋଲେ କେଉଁ ଆଳୀ
ଲଭିଲା ପ୍ରଭୁଙ୍କ ସଙ୍ଗ ଗୋ
ନୀଳକଣ୍ଠ ଭାଷେ  ମୋତେ କେଉଁ ଦୋଷେ
ଦୋଷୀ କଲେ ଶିବରଙ୍ଗ ଗୋ
ମୁଁ ତ ତାଙ୍କ ପଦ ଦାସୀ
ଦୁଃଖ-ସମୁଦ୍ରେ ଯାଉଛି ଭାସି ଗୋ ।୫।

ଶ୍ଳୋକଃ

**ଅୟି ସେବତି ! ଯାତି ! ତ୍ୱଂ ବଦାସ୍ମାନ୍ କୁନ୍ଦମଲ୍ଲିକେ**
**ଅତ୍ରବଦ୍ରାମଚନ୍ଦ୍ରଃ କିଂ ବନେ ତେ ଦୃଷ୍ଟିଗୋଚରଃ ।୮**

ଯଥା ରାଗ

କହ ଯାତ ଯୁଥି !  ମାଳତ ! ସେବତ !
ସାଥି ହୋଇଅଛ ଫୁଟି ଗୋ
ଅଳିର ଝଙ୍କାରେ  ପ୍ରେମର ଓଁକାରେ
ବାସନା ଯାଉଛି ଛୁଟି ଗୋ
ଝାଡ଼ି ଦେଉଛ ପରାଗ
ସଖି ! ତୁମ୍ଭର ପରମ ଭାଗ୍ୟ ଗୋ ।୧।
ଯେବେ ଏହି ପଥ  ଯାଇଥିବେ ନାଥ
ସଖୀ-କରେ କର ଦେଇ ଗୋ
ମନ୍ଦ ପବନରେ  ସେ ଅପଘନରେ
ପରଶି ତ ଥିବ ସହି ଗୋ
ମନ୍ଦେ ହସି ରଘୁବୀର
ଚୁମ୍ବୁ ନେଇଥିବେ ତୋତେ କର ଗୋ ।୨।

ସଖିର ଗଭାରେ                    ମାନସ ଲେଭାରେ
ଯେବେ ଦେଇଥିବେ ଖଞ୍ଜି ଗୋ
କସ୍ତି କୁମ୍ଭସ୍ତନା                    ଉମ୍ଭ ଧରି ଙ୍କ ନା
ଥିବ ତାଙ୍କ ମନ ରଞ୍ଜି ଗୋ
ସେହି କାଳେ ଗୋ ସଜନି !
ଦରଦାସ କରିଥିବ ଧନୀ ଗୋ ।୩।
ପ୍ରେମେ ହୋଇ ଭୋଳ                    ପ୍ରଭୁ ରଘୁବାଳ
ପରଶି ତ ଥିବେ ତନୁ ଗୋ
ବସି ଲତା ତଳେ                    ସଜନୀର ମେଳେ
ପ୍ରେମ ଭାଷେ ତାଙ୍କ ମନୁଁ ଗୋ
ରୁଷ୍ଟୁ କରି ସେ କିଶୋର
ମାନ ଭାଙ୍ଗି ଥିବେ କିଶୋରୀର ଗୋ ।୪।

ଶ୍ଳୋକଃ

**ହେ ବଣ୍ୟଜନ୍ତୁ ନିକରାଃ ! କ୍ୱଗତଃ ପତିର୍ନୋ**
**ଦୃଷ୍ଟଃ ସଚେତ୍ କଥୟ ପକ୍ଷିକଦମ୍ବ ଶୈଳ**
**ଜ୍ଞାତ୍ୱାପି ମୌନବିଷୟେହି ମତି ର୍ଯଦିବୋ**
**ସତ୍ୟଂ ହତା ବୟମତୀବ ହୃରାଧିସକ୍ତାଃ ।୯**

ପୟାର

କହ କହ ଶବ ଦେହ ମୃଗ କୃଷ୍ଣସାର
ଆହେ କରି ! ବାସ କରି ଥାଅ କାନନର ହେ ।୧।
ହେ ଶମ୍ବର ପୀତାମ୍ବର ଅମ୍ବୁରୁହ ନେତ୍ରା
ଅତ ସରୁ ସେ ଡମରୁମଧ୍ୟା ଦେବୀ ସୀତା ହେ ।୨।

ଅହେ ଗିରି ବାଣାଧାରି ଶଇଳ-ଉରଜା
ଅହେ କୁନ୍ଦ ମନୁ ଛନ୍ଦ ତେଜ ଯେବା ଲଜ୍ଜା ହେ ।୩।
ହେ କୋକିଳ କର କଳ ସଙ୍ଗୀତ ରସାଳେ
ଏହି ପଥରେ ଇଙ୍ଗିତ ଦୃଷ୍ଟି ପ୍ରିୟା ମେଳେ ହେ ।୪।
ଗଲେ କାନ୍ତ ରଘୁସୁତ ପ୍ରିୟା ହାତ ଧରି
ଅଛ ଦେଖି କାରମାଣୀ ଅମ୍ଭେ ତ ପଗୁରି ହେ ।୫।
ହେ ଅଶୋକ ହେଲ ଶୋକ କରି ତୋତେ ଅଶ
ଶାଖାଯୁତ ସଖାହତ ହୋଇଲୁ ନିରାଶ ହେ ।୬।
ଅହେ ଚୁତ ଏବେ ଚ୍ୟୁତ କଲ ପ୍ରାଣକାନ୍ତ
ରସ ହୀନ କଲ ମନ ରସାଳ ନିତାନ୍ତ ହେ ।୭।
ହେ ଚନ୍ଦନ ଅମ୍ଭ ଧନ କାହିଁ ଦେଖିଛ କି ?
ଅଙ୍ଗଦେଶ କରେ ବାସ ଭୁଜଙ୍ଗ ସମ କି ? ।୮।
ଏତେ ଅଛ ରଘୁବନ୍ଧୁ ବାରତା ନ ଜାଣି
କିବା ଜାଣିଅଛ ପୁଣି ନକହ ବଚନ ହେ ।୯।
ରାମ ବିନା ଏ ନବୀନା ଗଣେ ହେବେ ନାଶ
ମିଳ ଭଣେ ଅକାରଣେ ହେବ ହତ୍ୟା ଦୋଷ ହେ ।୧୦।

## ଚତୁଷ୍ପଦୀ

ଅଗୋ ଲତା ତରୁ !
କାହିଁ ଗଲେ ପ୍ରେମ-ମନ୍ତ୍ର-ଦୀକ୍ଷା-ଗୁରୁ ।୦।
ନାଗେଶ୍ୱର ଅନୁରାଗ ହୀନ
ରାଗ ହେବାର କି ଏ ବିଧାନ ?
ତ୍ୟାଗ କରି ଅଗ ବିଷୟୁ ବିଭାଗ
ଧିକ ଧିକ ଯାଉ ଏ ଜୀବନ ।୧।

କରୁଣା ! କରୁଣା ଊଣା କଲ
କ୍ରୁଦ୍ଧ ଗୋ ହୃଦର ଏ କି ଭଲ
ମଦନ ସୁନ୍ଦର ବଦନ ଚନ୍ଦ୍ର
ଚକୋରୀ ଅମୃତ ନାଶ କଲ ।୨।
ତୁଳରଅନା ତୁଳୀ ମାରଦାଅ
ନାରୀଗଣଙ୍କର ପ୍ରାଣ ନିଅ
ହାରିଲେ ଜୀବନ ବାରିଜ-ନୟନ
ସମୀପେ ବାରତା କହ କହ ।୩।
ଅଶୋକ ହେ ଶୋକେ ଦକଦକ
ବିବେକ କର ଏ ନାରୀମାନଙ୍କ
ଭାବ ରାମ ଭାବ ଯିବ ନିଷ୍ଟେ ଜୀବ
ନୀଲ ଭ୍ରମେ ଯଶ ଏ ମାନଙ୍କ ।୪।

ଶ୍ଳୋକଃ

**ବନେଚରନ୍ତୀ ବନିତା ତମାଲଂ ରାମଭ୍ରମେଣାଥ ଲିଲିଙ୍ଗ କାଚିତ୍**
**ଅନ୍ୟାପି ଶୁଶ୍ରାବ ପିକସ୍ୱନଂ ହି ସେ ବାସ୍ୟ ବାଣୀତି ବିଭାବ୍ୟକାପି**

ଝଙ୍କ

ଭ୍ରମେ ହର ମାୟାବର ! ରାମ ବିରହରେ
ରାମନେଣୀ ସ୍ୱର୍ଣ୍ଣଗାମୀ ଭ୍ରମନ୍ତି ବନରେ ଗୋ ।୧।
କାନ୍ଦି କାନ୍ଦି କର୍ମ ନିନ୍ଦି ନପାଇ ସନ୍ଦେଶ
ଇତସ୍ତତ ନାରୀଯୂଥ କାନନ-ପ୍ରଦେଶ ଗୋ ।୨।
ତମାଳକୁ କେ କୋଳକୁ ଅଣେ ଭାବି ରାମ
ଦୂର୍ବାଦଳେ କୁତୁହଳେ କେ କରେ ବିଶ୍ରାମ ଗୋ ।୩।

କୋକିଳର କଣ୍ଠସ୍ୱର ବାରି କେହୁ ଶୁଣେ
କେବା କହେ ସଖୀ ଅହେ ପ୍ରଭୁଛନ୍ତି ଏଣେ ଗୋ ।୪।
ଶୁକ ସାରୀ ରବ କରି ଡାକେ ରାମ ରାମ
ଧୁଇ ଗୃହ ଧରାଧରି ଚଳନ୍ତି ସେ ଧାମ ହେ ।୫।
ନପାଇ ତ ଶୋକ ଚିତ୍ତ ଦୁଃଖେ ପଡ଼ି ଧରା
କର ମାରି ବକ୍ଷୋପରି ଶୋକରେ ଅଧୀରା ହେ ।୬।
ହା ହା ରାମ ଗୁଣଧାମ ଶ୍ୟାମଳ-ସୁନ୍ଦର
ଆହା ରସ-ରାଜ ଆସ କୋଳକୁ ଅମ୍ଭର ହେ ।୭।
ଇଙ୍ଗିତରେ ଭ୍ରୂଭଙ୍ଗିରେ ଥରେ ଦିଅ ଠାରି
କେଉଁ ଆଣେ ଦାସୀ ନାଶେ ପଣ ଅଛ କରି ହେ ।୮।
କେହୁ ବୋଲେ ସଖି ହେଲେ ସେ ତ ଭାବଗ୍ରାହୀ
ପଦେ ପଡି କରଯୋଡ଼ି ଜଣାଇବା ସହି ଗୋ ।୯।
ଭାବି ଏହା ସେ ସୁଦେହାଗଣେ ଆନନ୍ଦରେ
କଲେ ସ୍ତୁତି ରଘୁପତି-ପଦେ ନୀଳ ବୋଲେ ହେ ।୧୦।

ଶ୍ଲୋକଃ

**କଥାଂ ପିତ୍ୱା ନାଥ ! ଅମୃତରସିକା ନାପି ରସନା**
**କରୌ ନୋ ନିତ୍ୟଂ ତେ ଚରଣକମଲାସ୍ୱାଦସୁଖିନୌ**
**ଶିରଶ୍ଚାପି ରାମ ପ୍ରଣତିନିରତଂ ଗଚ୍ଛତି ରତିଂ**
**ଢନୌ ତପ୍ତେ ସିଞ୍ଚସି ବଚନଜଲଂ ନାପି ଚ କଥମ୍ ।୧୧**

ଝିଙ୍କ

ସୁଧା ସମ ଅହେ ରାମ ତୁମ୍ଭ ରସ କଥା
ନାଶି ଦାନ ଏ ବଦନ କହୁଛୁ ସର୍ବଥା ହେ ।୧।

କରଦ୍ୱୟ ରଘୁରାୟ ଚରଣ-କମଳେ
ନିରତରେ ଉଷତରେ ସେବା କରେ ହେଲେ ହେ ।୨।
ତୁମ୍ଭ ପଦେ ଅପ୍ରମାଦେ ଲଗୁ ଏହ୍ନ ଶିର
ରଘୁରାୟ ଏ ଅଭୟ ଦେଇ ଦାସୀ କର ନେ ।୩।
ଜଳେ ତନୁ ହେ ଅତନୁ-ଜାତ ! ତୁମ୍ଭ ଲଗି
ସୁଧା ଧାର ସମ ଗିର ସିଞ୍ଚ ଅନୁରାଗୀ ହେ ।୪।
ଦୟା କର ହେ କିଶୋର ଦଶରଥ-ସୁତ
ଭଷେ ନୀଳ ମୁଁ ଭ୍ରସଳ ପାଦ-ପଦ୍ମରେ ତ ହେ ।୫।

ଶ୍ଳୋକଃ

**ନମସ୍ତୁଭ୍ୟଂ ଭଗବତେ ବିଶୁଦ୍ଧ ଜ୍ଞାନ ମୂର୍ତ୍ତୟେ
ଆତ୍ମାରାମାୟ ରାମାୟ ସୀତାକାନ୍ତାୟ ବେଧସେ ।୧୨**

ଗୀତ

ନମୋ ନମ ହେ ପରମ ଶୁଦ୍ଧ ଜ୍ଞାନ ମୂର୍ତ୍ତି
ଆତ୍ମା ରାମ ଅଟେ ରାମ ଜୟ ସୀତାପତି ହେ ।୧।
ତୁମ୍ଭେ ସତ୍ୱ ତୁମ୍ଭେ ତତ୍ୱ ତୁମ୍ଭେ ଯୋଗେଶ୍ୱର
ଅନ୍ତର୍ଯ୍ୟାମୀ ନାଥ ସ୍ୱାମୀ ଦାସୀ ଏ ତୁମ୍ଭର ହେ ।୨।
ନାହିଁ ନାଶେ କେଉଁ ଯଶେ ହେବ ଉପଭୋଗୀ
ଦୟାସିନ୍ଧୁ ଦୀନବନ୍ଧୁ ହୁଅ ଅନୁରାଗୀ ହେ ।୩।
ବୀଣା ସ୍ୱନେ ଏ କାନନେ ଆଣିଲ ଅତାଇ
ସବୁ ଭିନ୍ନ କରି ଅନ୍ୟ ଭାବରୁ ଛଡ଼ାଇ ହେ ।୪।
ଅପକର୍ମ ପାଇଁ ଧର୍ମ-ସହାୟକ ନାଥ !
ତେଜ ସଙ୍ଗ ଏତେ ରଙ୍ଗ କରିବା ଯଥାର୍ଥ ହେ ।୫।

ଅଛ କାହିଁ ଅସ ଧାଇଁ ପ୍ରେମ ତୃଷା ନାଶ
ଅଶ୍ରୁରଲେ ପଦତଳେ ନୀଳକଣ୍ଠ ଦାସ ହେ ।୭।

ଶ୍ଳୋକଃ

**ତା ସ୍ତଦା ନାୟିକାଃ ସର୍ବା ରାମ ପ୍ରେମ ବିମୋହିତାଃ**
**ବାଲ୍ୟଲୀଳାଂ ଚ ରାମସ୍ୟ ତ୍ୱାଚରନ୍ତି ପରସ୍ପରଂ ।୧୩**

ଛନ୍ଦ

ରାମ ପ୍ରେମ ବଶେ ବାମନେତ୍ରା ପାଗଳିନୀ
ପ୍ରଭୁଙ୍କର ବାଲ୍ୟକାଳ ଲୀଳା ବିନୋଦିନୀ ହେ ।୧।
କେ ବୋଲଇ ମୁହିଁ ସତ୍ୟ କଉଶଲ୍ୟା ଧନ
ଏହା ବୋଲି ବଶେ ପେଲି ସଖି କୋଳେ ଜାଣି ହେ ।୨।
କେ ଅଞ୍ଚଳକୁ ଚଞ୍ଚଳ ଧରି କରେ ଅଳି
ଦିଅ ମାତ କ୍ଷୁଧାରେ ତ ଅସ୍ଥିର ଏ ଭଳି ଗୋ ।୩।
କେବା ଧରି ସନ୍ତରସ୍ତ ବୋଲେ କଲି ନାଶ
ଏ ତାଡ଼କା ରାକ୍ଷସୀ କି ମୁହିଁ ରଘୁଈଶ ଗୋ ।୪।
କେବା ଖର ନାଉ ଅର ସଖି ବୋଲେ ବାଣୀ
ଏ ମାରୀଚ ଅତ ନୀତ ମୁହିଁ ରଘୁମଣି ଗୋ ।୫।
କେବା ତଳେ ପଡ଼ୁ ହେଲେ ସୁବାହୁ କି ମଲା
କେଉଁ ଧନୀ ପୃଷ୍ଠ ଘେନ ଶିରେ ବରଷିଲା ।୬।
କାହା କର ଭଙ୍ଗି ଧୀର କେ ବୋଲଇ ଧନୁ
ହେବ ମୁଁ ତ ବିବାହିତ ସୀତା-ବର-ତନୁ ହେ ।୭।
କେବା ରାଗେ ଧାଇଁ ଅଗେ କା'କୁ ଓଗାଳିଲା,
ଛନି ଯମ ପର୍ଶୁରାମ ବୋଲି ମୁଁ ବୋଇଲା ହେ ।୮।

ଧନୁ ଭଙ୍ଗି ଏ ଶୋଭଙ୍ଗୀ ନେଇ ଯାଉ କେଣେ
ନଜାଣୁ କି କ୍ଷମତା କି ବୀର ଶୂରପଣେ ହେ ।୯।
କେବା ପାଦେ ଅପ୍ରମାଦେ ପଡ଼ି କହେ ଗିର
ଫର୍ଶୁରାମ ମୁଁ ହେ ରାମ ତୁମ୍ଭର କିଙ୍କର ହେ ।୧୦।
ତର୍ଜନୀକି କେବା ଚେଙ୍କି ବୋଲେ ଯାଅ ଯାଅ
ଅପରାଧ ହେଲା ଛେଦ ମହେନ୍ଦ୍ରରେ ରହ ହେ ।୧୧।
ଏହି ମତ ରସବତୀ ପ୍ରଭୁ ଲୀଳା ଚୟ
ପ୍ରେମ ଭୋଳେ ବନସ୍ଥଳେ କଲେ ଅଭିନୟ ହେ ।୧୨।
ଅନୁରକ୍ତ ରାମଭକ୍ତ ତାଙ୍କ ପାଦ ତଳେ
ନିତ ଦାସ ଭବ ଆଶ ନୀଳ କରେ ଭୋଳେ ହେ ।୧୩।

# ଫୁଲତୋଳା

## ଖଟ୍ଟ

ଶୁଣ ଉମା ଗିର ଜେମା ପର୍ବଣି ସଙ୍ଗିନୀ !
ବନେ ବନେ ରାମ ବନେ ଭ୍ରମନ୍ତ କାମିନୀ ଗୋ ।୧।
ଦଣ୍ଡେ ମୋହ ପୁଣି କୋହ ଉଠେ ବାରମ୍ବାର
ହା ହା ରାମ ଗୁଣଧାମ ବହେ ଅଶ୍ରୁଧାର ଗୋ ।୨।
ଅଗ୍ନି ବନେ ଅଘଟନେ କଲି ଉଠେ ଖର
କାମରାଣି ବାଣି ଟାଣି ମାରଇ ପ୍ରଖର ଗୋ ।୩।
କେ ବସୁଧା ପରେ ସୁଧାକର ମୃଗୀ ଗୋଷ୍ଠୀ
ଅଲିଙ୍ଗନେ ଅଘଟନେ ଧୂଳି ଅଛି ପୁରି ହେ ।୪।

କା' ଅଧର ସୁଧାକର ଭଜେ ପାଣ୍ଡୁ ରଙ୍ଗ
କ୍ରୋଧଭର ଅଳଙ୍କାର ଫିଙ୍ଗେ କେ ବନିତା ଗୋ ।୫।
କେ ବୋଲଇ ସ୍ତନେ ଏହି ପତ୍ରାବଳୀ-ଛନ୍ଦ
କାହିଁ ଲେଖି ଥିବା ସଖି ! ଧିକ ଏ ଜୀବନ ଗୋ ।୬।
ଆମ୍ଭ ରାମ ବନେ କାମ ବାନ୍ଧୁ ଛନ୍ତି ନାସ୍ତ୍ରାସି
ଅଗ୍ନି ବାଣ ସମ ଜାଣ ହେଲଣି ଏ ଶଶୀ ଗୋ ।୭।
ପିକ ଗୀତ ଅମ୍ଭ ଚିତ୍ତ କରେ ନାନା ସ୍ଥାନ
ବ୍ରେମୋଦ୍ଗମ କରେ ପୁନଃ ମଳୟ ପବନ ଗୋ ।୮।
ଏ ଚନ୍ଦନ କି ଦହନ ଦେହେ ନ ଧେନିବା
ଅଳି ଗାନେ ଦେଲେ କାନେ ନିଷ୍ଟପ୍ତ ମରିବା ଗୋ ।୯।
କେ ବୋଲଇ ରଘୁସାଇଁ ନିଷ୍ଟପ୍ତ ଆସିବେ,
ମନ୍ଦେ ହସି ପ୍ରାଣ ତୋଷି ବଚନ ଭାଷିବେ ଗୋ ।୧୦।
ଦେଖ ସହି କେତେ ଏହି ଫୁଟିଛନ୍ତି ସୁମନ
ମାଳ ଭାଷେ ରାମ ଆସେ କରିବା ଚୟନ ଗୋ ।୧୧।

ଯଥା ରାଗ

ଅଳିଗଣ ମିଳି ଦେଇ ହୁଳହୁଳି
ସୁମନ ଅଣନ୍ତି ତୋଳି ହେ
ହାସ ପରିହାସ ନାନା ମତେ ଭାଷ
ଭାଷନ୍ତି କି ଢଙ୍ଗେ ଛଳି ହେ
ନାଗେଶ୍ବର ପାଶେ ନଯା
ଛୁରିଅନା ଘାରି ଦେବ ମଲ୍ଲା ଗୋ ।୧।
ମଲ୍ଲୀ କେ ଭାଷଇ ଫୁଲ ଆସେ ସହି
କରୁଣା କରୁଣା କର ଗୋ

ଅରଜୁନ ଅଛୁ ବରଜୁ ମୃଗାକ୍ଷି !
ଗଣିକା କି ନାରଖାର ଗୋ
ଭଣିଲ୍ଲ କେ ହସି ହସି
ଏ ତ ସବୁଠେଜ ହେଲଣି ଦୋଷୀ ଗୋ ।୨।

ଏ କୁନ୍ଦ କୁସୁମ ସୁନ୍ଦର ଗୋ ଧନ !
ପନ୍ଦର ବୟସୀ ସନ୍ତ୍ର ଗୋ
ନବ ଘନ ଶ୍ୟାମ— ଗଲାକୁ ଗୋ ବାମ—
ନେଲା ଅତ ଶୋଭା ପାଇ ଗୋ
ତୋଳ ତୁଳସୀ-ମଞ୍ଜରୀ
ମାଳ ଗୁନ୍ଥି ଦେବା ଗଲେ ହରି ଗୋ ।୩।

ତୋଳ ଏ କାମିନୀ ଅଗୋ ସୌଦାମିନୀ—
ହାସିନୀ ସଜନୀଗଣେ ଗୋ
ନିଅଳି କି ଭଳି ଛୁଡ଼ ଯାଅ ଅଳି !
କିବା ନାହିଁ ତୁମ୍ଭ ମନେ ଗୋ
ତୋଳ ନୀପ-କରବୀର
ଚମ୍ପା କେତକୀ କିଆ ନିକର ଗୋ ।୪।

ନୁହ ଗୋ ଅକୁଳ ଫୁଟିଛୁ ବକୁଳ
ସଖିକୁଳ ତୋଳ ତୋଳ ଗୋ
ହେଲ ହୋଇ ଗଲା ହେଞ୍ଜି ରଘୁବାଳା
ଧଇବା ଆନନ୍ଦେ କୋଳ ଗୋ
ଭାବ ସେହୁ ରାମ ଭାବ
ସତେ ନୀଳକଣ୍ଠ ଜୀବ ଯିବ ହେ ।୫।

ଶ୍ଳୋକଃ

**ବିହାୟ ସ୍ଫୁଣ୍ଣ ସମ୍ଭୋଗଂ ରାମଂ ରଘୁବରଂ ବିନା**
**ବନେ ଭ୍ରମନ୍ତି ସୁନ୍ଦର୍ଯ୍ୟୋ ରଘୁନାଥ ବିଦୂଷୟା ।୧୪**

ଖର୍ବ

ଏହି ମତ ରସବତୀ ଫୁଲ ତୋଳା ସାରି
ସୁଖଭୋଗ ଅଇଶ୍ୱର୍ଯ୍ୟ ଦୂରେ ପରିହରି ହେ ।୧।
ରାମଭାବେ ମତ୍ତ ସର୍ବେ ଭ୍ରମି ଏଣେତେଣେ
ରଜନୀରେ ପ୍ରବେଶିଲେ ନିବିଡ-କାନନେ ହେ ।୨।
ହିଂସ୍ରଜନ୍ତୁ ଯହିଁ ଚରୁ ଦମ୍ଭ ଝାଲ ଦ୍ୟନ୍ତି
ତାଙ୍କ ପାଶ ନାରୀବଂଶ ଏମନ୍ତ ବୋଲନ୍ତି ହେ ।୩।
ହେ ଶାର୍ଦ୍ଦୁଳ ରଘୁବାଳ ଦେଖିଥିଲେ କହି
ନାହିଁ ଅସି ଯାଅ ଗ୍ରାସି ଏହି ହୀନ ଦେହି ହେ ।୪।
ହେ ଶମ୍ବର ପୀତାମ୍ବର କୁରଙ୍ଗ ହେ ଶୁଣ
ତୁରଙ୍ଗ ପରି ଏ ରଙ୍ଗ କର ଏ କି ଗୁଣ ହେ ।୫।
ଏତେ ହିଂସ୍ରଜନ୍ତୁ ବାସ କର ଏ କାନନେ
ଦେଖି ନାହଁ କିପାଁ କହ ସେ ରଘୁନନ୍ଦନେ ହେ ।୬।
ତାଙ୍କ ବିନେ ଅମ୍ଭେମାନେ ହେବୁ ପ୍ରାଣତ୍ୟାଗ
ମିଳ ଭାବେ ଆସ ପାଶେ ରାମ ମହାଭାଗ ହେ ।୭।

ଶ୍ଳୋକଃ

**ଅଥ ତା ନାୟିକାଃ ସର୍ବାଃ ସମେତ୍ୟ ସରଯୂତଟଂ**
**ଅଧ୍ୟୁଷୁର୍ଦ୍ଦୁଃଖିତା ସ୍ତତ୍ର ନୀଲ କୋମଳ ବାଲୁକାଂ ।୧୬**

ଖର୍ବ

ଏହି ମତ ରସବତୀ ଖୋଜି ରଘୁନାଥ
ଶୋକଚିତ୍ତ ବ୍ୟାକୁଳିତ ହୋଇଣ ନିତାନ୍ତ ଗୋ ।୧।
ବନେ ବନେ କ୍ଷୁଣ୍ଣ ମନେ କହି ନାଥ ନାଥ
ପରବେଶ ନାରୀବଂଶ ସରଯୂ ତୀରେ ତ ହେ ।୨।

ଚନ୍ଦ୍ରକର ପଡ଼ି ନୀର ଦେଶେ ଶୋଭାକର
ନାଚ ଅଟେ ତୀର ଦେଶେ ଲହରୀ ନିକର ହେ ।୩।
ପୁଳିନ ତା ସୁଶୋଭିତା କୋମଳ-ବାଲୁକା
ଅନମିତା ବୃକ୍ଷ ଲତା କୁସୁମିତ ଏକା ହେ ।୪।
ମନ୍ଦେ ମନ୍ଦେ ଛନ୍ଦେ ଛନ୍ଦେ ବହଇ ମଳୟ
ଆମୋଦିତ କରେ ଚଉ ଫୁଲଗନ୍ଧ ଚୟ ଗୋ ।୫।
ଦୁଃଖେ ଅତି ରସବତୀ ସେ ପୁଳିନ ଦେଶେ
ଭାବ ରାମ ଗୁଣଧାମ ବସିଲେ ହରଷେ ହେ ।୬।
ଅନୁରକ୍ତ ରାମଭକ୍ତ ଚରଣ-ପଙ୍କଜେ
ନିରନ୍ତର ଚେତ କିଙ୍କର ଭାବେ କଣ୍ଠ ଭଜେ ହେ ।୭।

# ଦୋଳଲୀଳା

## ପାର୍ବତ୍ୟୁବାଚ

ଶ୍ଳୋକଃ

**ଅଥ ଯୋଗେଶ୍ୱରୋ ରାମଃ ସୀତୟା ସହକାନନେ**
**ଚକାର ଯଦ୍ୱ ଯାଂ ଲୀଳାଂ ବଦ ଚନ୍ଦ୍ରବିଭୂଷଣ ।୧।**

ପୟାର

ବୋଲେ ଉମା ଗିରିଜେମା ଶୁଣ ପ୍ରାଣନାଥ
ରାସସ୍ଥଳୁ ସେ କୃପାଳୁ ଧରି ସୀତା ହାତ ହେ ।୧।
ଅନ୍ତର୍ଦ୍ଧାନ ହୋଇ ବନ ଦେଶେ ଆନନ୍ଦରେ
ସୀତାସହ ରଘୁରାୟ କେଉଁ କୃତ୍ୟ କଲେ ହେ ।୨।

ସେ ମଧୁର ଲୀଳା ସାର ବନ୍ଦ ଶଶି-ଧର
ନୀଳ ଭୂଷ ପାପ ନାଶ କରେ ତୋର ଗିର ବନ୍ଦ ।୬।

## ମହାଦେବ ଉବାଚ

ଶ୍ଳୋକଃ

**ବନାନ୍ତରେ ରାଘବରାସ କୌତୁକଂ**
**ତମୋପହାରି ସରସଂ ସ ଜାନକି**
**ବିନା ବିଷାଦଂ ନଗରାଜ ନନ୍ଦିନି !**
**ବଦାମିତେରତ୍ତଚ୍ଛୃଣ ରାସ ରଙ୍ଗିନି ! ।୧୬**

ଦୀର୍ଘ

ଶୁଣ ଏ ରସ ଚତୁର ! ନହୁଅ ଅତ ଅତୁର
ପାପକୁ କତୁରୀ ରାମ ଗାଥା
ନାୟିକା ବରଜ ରାସେ ଜାନକୀ ସହ ଉଲ୍ଲାସେ
ରଘୁନାଥ ପ୍ରେମେ ହୋଇ କଥା ଗୋ
ସଖି ଗୋ
ହାସ ପରିହାସ ଛଳ ଶ୍ଳେଷ
ପ୍ରିୟା ସଙ୍ଗେ ରଘୁକୁଳଈଶ ଗୋ ।୧।
କାହିଁ ବସି ଲତାତଳେ କେବେ ଅବା ମଣିଶିଳେ
ପ୍ରଭୁଙ୍କ କୋଳେ ବଳେ ବଳେ ବସି
ମନ ସାଧେ ଠାକୁରାଣୀ କେବେ ରଘୁକୁଳ ମଣି
ସୀତା ଅଙ୍କେ ଯାଉଛନ୍ତି ମିଶି ଗୋ
ସଖି ଗୋ
କେବେ ତୋଳି ନାନାବିଧ ସୁମନ
ଗନ୍ଧ ରଚୁଛନ୍ତି ବେନି ଜନ ଗୋ ।୨।

ମାଧବୀ ନିକୁଞ୍ଜେ କାହ୍ନୁ    ପଲ୍ଲବ ଶଯ୍ୟାରେ ଶୋଇ
ବାନ୍ଧି ତହିଁ ସେବତୀର ଦଳ
ଫୁଲ-ରଚିତ ବ୍ୟଜନ    ଧୀରେ ଧୀରେ ସମାର୍ଜ୍ଜନ
କରୁଛନ୍ତି ରାମ ରଘୁବାଳ ଗୋ
ସଖି ଗୋ
ଫୁଲମାଳ ଧରି ଠାକୁରାଣୀ
ଠାକୁରଙ୍କ ଗଳେ ଦେଲେ ଆଣି ଗୋ ।୩।

କେବେ ପ୍ରେମଭରେ ସୀତା    ଫୁଲ ଦେଇ ଅନାଦୃତା
ଅଭିମାନେ ଠାକୁରଙ୍କୁ ଫିଙ୍ଗି
ଧରନ୍ତି ଟାଣି ଅଞ୍ଚଳ    ପ୍ରଭୁ ହୋଇଣ ଚଞ୍ଚଳ
ଛଡ଼ାଇ ତା ଚଳନ୍ତି ଶୋଭାଙ୍ଗି ଗୋ
ସଖି ଗୋ
ଲତା ଅନ୍ତରାଳେ ଯେବେ ଲୁଚି
ପଳୁ ରାମ ଚକ୍ଷୁ ବୁଜି ଛପି ଗୋ ।୪।

ମାଧବୀ ଲତା ମଣ୍ଡପେ    ଉଠି ଯାଇ ପ୍ରଭୁ ଅପେ
ଡାକୁଛନ୍ତି ବଢ଼ାଇଣି କର
ଆସ ଆସ ଆସ ଧନ    ସୀତେ ମୋ ପ୍ରାଣ ଜୀବନ
ଠାକୁରାଣୀ ହୋଇ ମାନଭର ଗୋ
ସଖି ଗୋ
ନତ ମୁଖେ ବୋଲୁଛନ୍ତି ବାଣୀ
ନନେଇ ତ ଗଲ ରଘୁମଣି ହେ ।୫।

କେବେ କନ୍ଧେ ଭରି କର    ହସି ହସି ଦର ଦର
ଅଞ୍ଚଳକୁ ନିଜ କନ୍ଧେ ଦେଇ

ପୁଣି ନଜାଣିଲ୍ଲ ପରି    ଦୋସଢ଼ାକୁ ଧୀର କରି
ସୀତା ଛନ୍ଦେ ଦଅନ୍ତ୍ର ପଡ଼ାଇ ସେ
ମୋହନ
ଛନ୍ଦ ଘୁଞ୍ଚ ତାଳ ମାରି ହସି
କେଉଁ ଲତା ତଳେ ଯାନ୍ତ୍ର ପଶି ସେ ।୬।

ଉରକୁ ଅନାଇ ଧନୀ    ଧୀର ହୋଇ ଚଳା ପୁଣି
ଲତା ତଳେ କୋଳରେ ଧରନ୍ତ୍ର
ଧନ୍ୟ ହେ ସୁନ୍ଦର ବର    ଅହେ ପ୍ରୀତ ପୁରନ୍ଦର
ନଷ୍ଟ କେତେ ଅଛେ ରଘୁପତି ହେ
ନାଥ ହେ
କିଶୋରୀ ବଚନେ ସେ କିଶୋର
ମନ୍ଦେ ହସି ଦେଲେ ପ୍ରତ୍ୟୁତ୍ତର ସେ ।୭।

ଯେବେ ମୁଁ ହୋଇଲି ଦୋଷୀ    ଅରେ ପ୍ରେମ ମଦାଳସି
ବାହୁ ପାଶେ ବାନ୍ଧି ରଖ ଧନ
ତୋର କଟାକ୍ଷ ଗୃହାଣୀ    ଅସିରେ ପକାଅ ହାଣି
ଦାସ କର କୁଞ୍ଚିବ ବସନ ଗୋ
ଧନ ଗୋ
ଅଳୀ ହେବ ଫୁଲମାଳୀ ଦେଇ
ଯାବକ ରଞ୍ଜିବି ସୁଖ ପାଇ ଗୋ ।୮।

ମାଜିବ ତୋ ଦରପଣ    ରାଜିବ ନେଇବି ଏ ପଣ
ରାଣ ଅଛୁ ନଦେନ ସେ ଦୋଷ

ଧୀରେ ଧୀରେ ବଜେ କର        କୁଞ୍ଜକୁ ରସିକାବର
କବରୀ ସାଜିବ ନୂଆ ବେଷ ଗୋ
ଧନ୍ୟ ଗୋ
ଏଣୀନେତ୍ରୀ ବାଣୀ ହେଉ ଶେଷ
ଜାଣି ଜାଣି କିଙ୍କର ମୁଁ ସିନା ଗୋ ।୯।
ପ୍ରଭୁ ବୋଲେ ମନ୍ଦହାସେ    ଦେବୀ ସେ ନିକୁଞ୍ଜ ବାସେ
ବଜେ କଲେ ପଲ୍ଲବ ଆସନେ
ପିଠି କରି ବସି ରାମ        ନବ ଦୁର୍ବାଦଳ ଶ୍ୟାମ
ହସି ହସି ଭାଷିଲେ ଏସନେ ଗୋ
ଧନ୍ୟ ଗୋ
ପୂର୍ଣ୍ଣ ହେଲା ବହୁଦିନ ଆଶା
ନୀଳକଣ୍ଠ ନୋହୁ ଲୋକହସା ଗୋ ।୧୦।

ଶ୍ଳୋକଃ

**ପ୍ରେମଭକ୍ତିବଶୋ ରାମଃ ସୀତାୟାଃ କେଶପାଶକଂ**
**ବବନ୍ଧ ଗନ୍ଧକୁସୁମୈଃ ସାନନ୍ଦଂ ତତ୍ର ରାଘବ ।୧୮**

ପୟାର

ବଶୀଭୂତ ପ୍ରେମାସକ୍ତ ଭକ୍ତରେ ମାଧବ
ହସି ହସି ଗୁରୁହାସୀ କୁନ୍ତଳ ସରବ ହେ ।୧।
କରୁ ମୁକ୍ତ ପୃଷ୍ଠେ ସ୍ଥିତ ଠାକୁରାଣୀଙ୍କର
କଳା ଫଣୀ ଖେଳେ ପୁଣି ସ୍ୱର୍ଣ୍ଣଭୂମି ପର ହେ ।୨।
ସକ୍ତିଭୂତ ରଘୁସୁତ ଶ୍ରୀକରେ ସାମଳି
ସୁତଇଲ କେଶଜାଲ ମରଦନ ସାର ହେ ।୩।

କଙ୍କତିକା ପ୍ରେମାଧିକା ଅର୍ଦ୍ଧଶଶୀ ତୋରି
ରାହୁପରେ ଚଢ଼ କରେ ନିଶାକର ପରି ହେ ।୪।

ଚୂଳଇଣି ସେ ବଦନ ସୀମନ୍ତ କାଟିଲେ
କିବା ଶଶୀ ଏହୁ ନାଶି ଦୁଇ ଭାଗ କଲେ ।୫।

ସେ ଯେ ଭୂରୁ ଅତି ସରୁ ରେଖି ମନୋରମ
ଗୁହିଁ ମୃଗ ମହାସୁଖ ଲଭିଲେ ଶ୍ରୀରାମ ହେ ।୬।

ସେ ସଜଡ଼ା ହେଲା ଯୁଡ଼ା ଯୁବାଧୈର୍ଯ୍ୟ ଚୂଡ଼ା
ସମତୁଲ ଜାଇ ଫୁଲମାଳ ହୋଇ ଭିଡ଼ା ହେ ।୭।

ପୁଣି ଚମ୍ପା ଦାମ ଚମ୍ପା-ଦେହା-ଗଳେ ଦେଲେ
ମଲ୍ଲୀ ଆଣି ରଘୁମଣି ତା ପରେ ଖଞ୍ଜିଲେ ହେ ।୮।

ଶିରପର ଫୁଲହାର ନାନାମତେ ଦେଇ
ସୀମନ୍ତରେ ଆନନ୍ଦରେ ରତ୍ନମଣି ଥାଇ ହେ ।୯।

କପୋଳରେ ପ୍ରେମଭରେ ସିନ୍ଦୁରର ବିନ୍ଦୁ
ମୁଖ ପଦ୍ମ ପାଶେ ଛଦ୍ମ ନୁହେ ପଦ୍ମବନ୍ଧୁ ହେ ।୧୦।

ଅଞ୍ଜନରେ ଆନନ୍ଦରେ ଲଞ୍ଜି ଦେବା ବେଳ
ମଦନର ଧନୁଶର ଗୁଣ ହେଲା ମେଳ ହେ ।୧୧।

ସର୍ବ ଶେଷେ ମନତୋଷେ ତାମ୍ବୁଳ ଭୁଞ୍ଜାଇ
ଠାକୁରାଣୀ ମନ ପୁଣି ସରସେ ରଞ୍ଜାଇ ହେ ।୧୨।

ଧରି କର ଥରଥର ହେଉଛନ୍ତି ଉଭୟ
କେ କହିବ ଅସମ୍ଭବ ଯାହା ହୁଏ ଶୋଭା ହେ ।୧୩।

ଠାକୁରଙ୍କ ପାଶେ ରଙ୍କ ଫଣି ଅବଧାରି
ଠାକୁରାଣୀ ପଦେ ପୁଣି ନୀଳ ଧ୍ୟାନ କରି ହେ ।୧୪।

ଯଥା ରାଗ

ରଙ୍ଗାଧରେ ହସି    ସଙ୍ଗାତରେ ଭାଷି
ଧୀରେ କହେ ରଘୁନାଥ ହେ
ସୁଗୃହୁ ବାସିନୀ    ରେ ମତ୍ତ କାଶିନି !
ଆସ ଯିବା ବନପଥ ଗୋ
ହେର ହେର ବର ଯୋଷା
ବନରାଣୀଙ୍କର ଗୃହଭୂଷା ଗୋ ।୧।
ପିକ-ସଙ୍ଗୀତରେ    କହେ ଇଙ୍ଗିତରେ
ତୋତେ ସ୍ୱାଗତ ଭାଷଣ ଗୋ
ପତ୍ର-ଚନ୍ଦ୍ରାତପ    ଟାଣିଛୁ ଆତପ
ହେବାପାଇଁ ନିବାରଣ ଗୋ
ପିନ୍ଧି ଶ୍ୟାମଳ-ଦୁକୂଳ
କର-ପଲ୍ଲବେ କରବ କୋଳ ଗୋ ।୨।
ବୋଲୁଛନ୍ତି ଧନୀ    ଆହେ ରଘୁମଣି
ଏ ତୁମ୍ଭ ପୂଜା-ସମ୍ଭାର ହେ
ପ୍ରଭୁ ଥାଉ ଦାସୀ    ପୂଜିବ କେ ହସି
ଶୁଣି ରାମ ପ୍ରେମଭର ହେ
କର ଧରାଧରି ହୋଇ
ବନେ ଭ୍ରମୁଛନ୍ତି ରଘୁସାଇଁ ହେ ।୩।
ଦେଖି ଅଲ୍ପଦୂରେ    ମାଳତୀ-ଲତାରେ
କୁସୁମ-ମଣ୍ଡିତ ହୋଇ
ବନଦେବୀ ଗଣେ    ଆନନ୍ଦିତ ମନେ
ରତ୍ନଦୋଳି ସାଜି ଦେଇ ହେ
ତାକୁ ଦେଖି ରଘୁପତି
ମନେ ହସି ଏସନ ବୋଲନ୍ତି ହେ ।୪।

ଦେଖ ରେ ଶିରୀଷ— କୋମଳା ଶିରୀଷ—
ଉରଜା-ପରାଣ ଧନ ଗୋ ।
ତୋ ପାଇଁ ଯତନ କରଣ ରତନ—
ଦୋଳା ଗୋଟି ଶୋଭବନ ଗୋ
ବାଳେକର କୋମଳାଙ୍ଗି ।
ଦୋଳା ଖେଳକୁ ପରାଣସଙ୍ଗି ! ଗୋ ।୫।

ଖଣ୍ଡ

ବୋଲେ ଧନୀ ପ୍ରାଣମଣି ଏ କି ରୀତି କର
ପ୍ରଭୁ ଆଉ ଦାସୀ କାହୁଁ ପାଇବ ଆଦର ହେ ।୧।
ତୁମ୍ଭେ ବାଳେ କର ନାଳେ ହେ ଘନସୁନ୍ଦର
ଦୋହଲାଇ ପ୍ରାଣସାଇଁ ସୁଖ ହେଉ ମୋର ହେ ।୨।
ମୁଁ ତ ନାରୀ ଗୃହଧାରୀ ! କୋମଳ-ଚରଣେ
ଆସେ ଉଷ୍ଣ ରଘୁରାଜ୍ଯ ବସିବ କେମନ ହେ ।୩।
ମୁଁ ଅବଳା ହେ ନବଳା ରଘୁବଳା ହର
ପାଦେ ପଡ଼ି କରଯୋଡ଼ି ଶୀଳ ଅବଧାର ହେ ।୪।

ପୟାର

ଶୁଣି ବାଣୀ ଯୋଷାମଣି ହେଲେ ହସ ହସ
ଅଞ୍ଚଳରେ ଚଞ୍ଚଳରେ ଖୋସି କଟିଦେଶ ହେ ।୧।
କଟି ଗୁହ୍ଯ ପାଶେ ନାରୀ-ବର ମନ୍ଦ-ହାସେ
ଯେସହୁ କ୍ଷୀନ ସୁ-ବସନ ଧୀରେ ଧୀରେ ଖୋସେ ହେ ।୨।
କର ଠାରି ଡାକେ ଥିରି ଆସ ଆସ ନାଥ
ତୁମ୍ଭ ବାଣୀ ମୋର ପୁଣି ସଦା ଶିରଗ୍ରାହ୍ଯ ହେ ।୩।
ତୁମ୍ଭେ ଥିଲେ ମୁଁ କି ହେଲେ ଡରେ ମହାଭୁଜ
ଦୟା କର ହେ କିଶୋର ପ୍ରଭୁ ରସରାଜ ହେ ।୪।

ଏ ଭାରତୀ ରଘୁପତି ମତ ବାଚଳତ
ପ୍ରେମଭରେ ଜାନକୀରେ କଲେ କୋଳାଗ୍ରତ ହେ ।୫।
ନିଜ ଗଳୁ ସେ କୃପାଳୁ କାଢ଼ି ରମ୍ୟାହାର
ଭବ ଭୋଳେ କୁତୁହଳେ ଦେଲେ ସୀତା ଉର ହେ ।୬।
ଆଣି ବେଗ ସେହି ନାଗବଲ୍ଲୀ ଦଳମାନ
ସୀତା ମୁଖେ ମନସୁଖେ କଲେ ସମର୍ପଣ ହେ ।୭।
ଛଡ଼ାଇ ତା ଦେବୀ ସୀତା ରାମ କରୁ ନେଲେ
ପ୍ରେମଭରେ ଶ୍ରୀମୁଖରେ ପ୍ରଭୁଙ୍କର ଦେଲେ ହେ ।୮।
ଚକ୍ଷୁ ଠାର ପରସ୍ପର ହେଲେ ହସାହସି
ଭବେ ମିଳ ଯାଉ ବେଳ ଚନ୍ଦ୍ର ବୃନ୍ଦାବଣି ହେ ।୯।

ଶ୍ଳୋକଃ

**ଦୋଳାୟାମବସତ୍ ଦେବୀ ରାମବାକ୍ୟାନୁସାରିଣୀ**
**ଦେବାଶ୍ଚ ଦୁନ୍ଦୁଭିଂ ନେଦୁର୍ନୃତ୍ୟନ୍ତି ଗୃପ୍ସରୋଗଣାଃ ।୯**

ଯଥା ରାଗ

ଅରୁଣ ଅଧର—  କର-ପଦ୍ମ ଧର
ତରୁଣ ଶେଖର ରାମ ହେ
ଦୋଳି ପରେ ବିଜେ  କରାଇଲେ ନିଜେ
ନିଖିଳ ସୁଗୁଣ ଧାମ ହେ
କାମମୋହନ ଆନନ୍ଦେ
ଦୋଳି ଦୋହଲାଏ ନାନାଛନ୍ଦେ ହେ ।୧।
ମନ୍ଦେ ମନ୍ଦେ ହସି  ଧନୀ ଧୀରେ ଭାଷି
କମ୍ପା ହୁଏ ଥର ଥର ହେ

ସରୋଜ-ନୟନ ! ମୁଁ ତ ପରଜନ
ଏ ଭାବ ନୁହେ ସୁନ୍ଦର ହେ
ଭାବଗ୍ରାହୀ ଦେବ ହର
ପ୍ରିୟା ବାକ୍ୟେ ଦୋହଲାଏ ଥିର ହେ ।୨।

ହୁଅନ୍ତେ ଚକିତ ଶୁଭିଲା ଲଳିତ—
ନୂପୁର କଟି ମେଖଳା ହେ
ଅଧରେ ଅଧର ଭିଡ଼ି ଧନୀ ଧୀର
ବସିଲେ ହୋଇ ନିଶ୍ଚଳା ହେ
ବାଙ୍କ ଖଣ୍ଡେ ଅଛୁ କର
ଦୋହଳାଏ ଧୀରେ ରଘୁବୀର ହେ ।୩।

ଯେତେ ଶୁକ ସାରୀ ମୟୂର-ମୟୂରୀ
ନିଶ୍ଚଳ ନୟନେ ଚାହିଁ ହେ
ହେଲେ ଶୂନ୍ୟେମେଳ ଅମର ସକଳ
ଦୁନ୍ଦୁଭି ଦେଲେ ବଜାଇ ହେ
ବୃଷ୍ଟି କଲେ ଫୁଲ ରାଶି
କେବା ଜୟ ଜୟ ବୋଲ ଭାଷି ହେ ।୪।

ନାଚନ୍ତି ଅପ୍ସରୀ ତାଳ ଲୟ କରି
ଗହଳ ଗଗନ-ପଥ ହେ
ଯେ ଯାହା ବାହନେ ବସି ଦେବଗଣେ
ଅନାଇଁ ହେଲେ ଉଷତ ହେ
ସେହି ମୂର୍ତ୍ତି ମନେଭାବ
ଦୀନ ନୀଳକଣ୍ଠ ହେଲା କବି ହେ ।୫।

ଖର୍ବ

ଅଗୋ ପ୍ରିୟେ କର ଲୟେ ଦୋଳ ଲୀଳା ରସ
ପ୍ରେମମୟ ସମୁଦାୟ କାନନ ପ୍ରଦେଶ ହେ ।୧।
ଶୁକ ପିକ ପକ୍ଷିଯାକ ଯେତେ ଜୀବ ଜନ୍ତୁ
ନେଣବୁଜି ନାମହେଜି ଭୟତେଜି ଚଞ୍ଚୁ ହେ ।୨।
ଚତୁର୍ଦ୍ଦିଶେ ତାଙ୍କୁ ଦାଶେ ରାମମୟ ଧରା
ମତୁଆଲି ରସ କେଳି ଜାନକୀ ଅଧିରା ଗୋ ।୩।
ବାରମ୍ବାର ରୂପଧରା ଦୋଳି ଦୋହଲାଏ
ଦେବଦଳ କୋଳାହଳ ଶୂନ୍ୟେ କଲେ ଜୟେ ହେ ।୪।
ଧନ୍ୟ ପୁଣ୍ୟବନ୍ତ ସ୍ଥାନ ସତ୍ୟ ପୁଲିତ
ଧନ୍ୟ ଜୀବ ଜନ୍ତୁ ସର୍ବ ଧନ୍ୟ ସେ କାନନ ହେ ।୫।
ଚତୁର୍ଦ୍ଦିଶେ ସର୍ବଅଂଶେ ଧ୍ୱନିତ ସୂକ୍ତ
ଜୟ ସୀତା ଗୁଣଯୁତା ଜୟ ରଘୁସୁତ ହେ ।୬।
ସାରୀ ବୋଲେ ଦେଖ ହେଲେ ସୀତାମୁଖ ଛବି
ବୋଲେ ଶୁକ ହେବେ ମୂକ ରାମେ ଦେଖି କବି ହେ ।୭।
ସାରୀ କହୁ ସୀତା ଏହୁ ସୌଦାମିନୀ ପରା
ଶୁକ କହେ ରଘୁରାୟେ ନୀରଧର ତୋରା ହେ ।୮।
ରାମ ଋଣୀ ସୀତାହାସୀ ବୈହଣୀ ସେ କୋଟେଲ
ଭାଷେ ନୀଳ କୁତୂହଳ ଶିର ପଦତଳେ ହେ ।୯।

ପୟାର

ବୋଲେ ବାଳୀ ଦୋଳୁଦୋଳି ରସିକ-ରତନ !
ହେଉ ଶେଷ ଏ ରହସ୍ୟ ଭ୍ରମିବା କାନନ ହେ ।୧।
ପ୍ରିୟା ବାଣୀ ପ୍ରଭୁ ଶୁଣି ହେଲେ ଆନନ୍ଦିତ
ତେଜି ଦୋଳି ଆସେ ବାଳୀ ଯହିଁ ରଘୁସୁତ ହେ ।୨।

ପରସ୍ପର ଆନନ୍ଦର ସୀମା କେ କଳିବ
ଯାର ମାୟା କରେ ବାୟା ବ୍ରହ୍ମା, ଇନ୍ଦ୍ର, ଶିବ ହେ ।୩।
ବିପିନରେ ପ୍ରେମଭରେ ପୁନଶ୍ଚ ବିହର
ବୋଲେ ପ୍ରଭୁ ଦେଖ ସବୁ ଧନ୍ୟ କୃଶୋଦର ! ଗୋ ।୪।
ଆମ୍ଭ ଭାବେ ମତ୍ତ ସର୍ବେ ଅଗୋ ଜବାଧର
ଶୁକସାରୀ ଅରେ ଗୋଠ ! ପ୍ରେମରେ ଅଧୀର ଗୋ ।୫।
ତୋର ଗୁଣ କହେ ପୁଣ ତରୁଶାଖେ ସାରି
ଠାକୁରାଣୀ ବୋଲେ ବାଣୀ ଶୁଣ ଗୃପଧାରି ! ହେ ।୬।
ତୋ ମହିମା ଗୁଣ ସୀମା ଗାଉଅଛି ଶୁକ
ବୋଲେ ନୀଳ ରଘୁବୀର ଚରଣ ସେବକ ହେ ।୭।

---

## ଫୁଲେଶ୍ୱରୀ ବେଶ ବର୍ଣ୍ଣନା

ଯଥାରାଗ

କିଶୋର କିଶୋରୀ ଭରି ଧରାଧରି
ଭ୍ରମନ୍ତି ବିପିନ ମାଝେ ହେ
ମଦାଲସୀଙ୍କର କଟିରେ ମଧୁର—
ଲଳିତ ନିସ୍ୱନେ ବାଜେ ହେ
କଟିମେଖଳା କି ଛନ୍ଦେ
ପ୍ରଭୁ ନାଚନ୍ତି କେବେ ଆନନ୍ଦେ ହେ ।୧।
କେବେ ବେନିଜନ ଡେରନ୍ତି ଶ୍ରବଣ
କୋକିଳ କଳ ସଙ୍ଗୀତ ହେ

କେବେ ଶୁକ ସାରୀ			ନିସ୍ୱନକୁ ବାରି
ଶ୍ରୀରାମ କରି ଭଙ୍ଗୀ ତ ହେ
ସୁନା ଅଙ୍ଗୀ ସଙ୍ଗେ ଚଳି
କେବେ ସୀତା ଯାନ୍ତି ଅଗବଳି ହେ ।୨।

ନାଗେଶ୍ୱର କୁଞ୍ଜ			ନିରେଖିଣ କଞ୍ଜ—
ନୟନ ସୀତାଙ୍କୁ ଭଣି ହେ
ଦେଖ ପ୍ରିୟସହି			କି ଶୋଭା ଦିଶଇ
ଆହା ଏ ନିକୁଞ୍ଜ ଶ୍ରେଣୀ ହେ
ଫୁଟେ ଫୁଲ୍ ନାଗେଶ୍ୱର
ଛୁଟେ ବାସନ କେଡେ ସୁନ୍ଦର ହେ ।୩।

କର କର ବିଜେ			ଏହି ଫୁଲ୍-ଶେଯେ
ଘନକୁନ୍ତଳା ଛଇଲା ଗୋ
ଦଣ୍ଡେ ବିଶ୍ରାମିଣ			କରିବା ଗମନ
ଦେଖିବା ଗିରି ମେଖଳା ଗୋ
ହସି କାଣ ଦାସୀ ଚଳି
ପ୍ରଭୁକରେ କର ଛନ୍ଦ ବାଳୀ ହେ ।୪।

ବିଜେ ସୀତା ରାମ			ଦିଶେ ଅନୁପମ
ନିକୁଞ୍ଜ-ସଦନ ତୋରି ହେ
ମରକତ-ଘନ			ପରେ କି ସଦନ !
ବିଜୁଳି ଜାନକୀ ପରି ହେ
ଶଶୀ କୋଳ କି ରୋହିଣୀ
ଶାନ୍ତି କୋଳେ କି ପ୍ରୀତି ଗୃହିଣୀ ହେ ।୫।

ଦେଲେ ହୁଳ ହୁଳି			ଏହି କାଳେ ମିଳି
ବନ ଦେବା ଦେବୀଗଣ ହେ

ପ୍ରଭୁଙ୍କ ପାଖୁଣେ       ରହୁଣି ଅଦୃଶ୍ୟେ
ଯୋଗାଇଲେ ଆଭରଣ ହେ
ସବୁ କୁସୁମ-ନିର୍ମିତ
ଦେଖି ପ୍ରଭୁ ହେଲେ ପ୍ରମୋଦିତ ହେ ।୬।
ମନ୍ଦେ ମନ୍ଦେ ହସି       ବୀଣାଧର ଭଣନ୍ତି
ଛଣା ପଣା ବାଣି ! ଶୁଣରେ
ତୋ ବେଶ ପାଇଁକି       ପରାଣ ସହକି
କେତେ ଅଛି ଆଭରଣରେ
ତୋର ଅଙ୍ଗେ ଲାଗି ସେହୁ
ହେବେ କୃତାର୍ଥ ପରାଣ ସହୁ ଗୋ ।୭।
ହରି ମୁଖନତ       ଭ୍ରୂଭଙ୍ଗୀ ଗୁଳାତ
ହସି ସସ୍ମିତ ସୁନ୍ଦରୀ ହେ
ନବୀନ କିଶୋର       ନବ ପ୍ରେମଭର
ସମ୍ମୁଖେ ବସିଲେ ହରି ହେ
ହରିବାକୁ ଫୁଲବେଶ
ନୀଳକଣ୍ଠ ସୀତାରାମ ଦାସ ହେ ।୮।

## ଚତୁଷ୍ପଦୀ

(ଶୁନ ଶୁନ ବଂଶୀଧାରୀ ବାଣୀରେ)

ଦେଖ ଦେଖ ପ୍ରାଣ ସହୁ !
ନବ ଫୁଲ—ଅଳଙ୍କାର ଏହୁ ଗୋ ।୦।
ଅଳକାକୁ ଦେଖ ରସିକାବର !
ଚମ୍ପକ ଏ ମଥାମଣି ସୁନ୍ଦର

ଯୂଇ କୁସୁମରେ ମଣ୍ଡିତ ଗଣ୍ଡ
ନୀଳାକାଶେ କିବା ତାରକା ଶୋଭା ।୧।
କଅପର୍ଣ୍ଣ-କଅପର୍ଣ୍ଣୀରେ ଧନ
ମଲ୍ଲୀରେ କର ତୋ କରଭୂଷଣ ।
ଫୁଲର ମୁକୁଟ ଅହା କି ତୋର
ଭୁଲ କେ କରବ କେତକୀ ଗୋର ।୨।
କାଏ ଯେନ ଫୁଲ-ରୂପ ଡ଼ରବ
ନଥ ମନମଥ ନାଟେଣ୍ଟ ଥଉର ।
ସେବତୀ-ସୁବର୍ଣ୍ଣ ଶିର ଭୂଷଣ
ରସିକ ସଂସାରୁ ନିବ ଦୂଷଣ ।୩।
ନାଗକେଶରକୁ ଆଗରେ ଯେନ
ସୁନାସ୍ତ ତୋ ସହଚସ୍ତ ସମାନ ।
ମାଲତୀ ମାଳକୁ କେଲତୀ ହାର
ଅଲତୀ କରବ କି ପଟ୍ଟଗୃସ୍ତ ।୪।
କମ୍ବୁକଣ୍ଠି ! ଜମ୍ବୁନଦ-ମାଳିକା
ଚମ୍ପା ହାର ଅଟେ ପ୍ରେମ-ପାଳିକା !
ମକରନ୍ଦ ମନ୍ଦ ମନ୍ଦ ଝରଇ
ଅଳି ଅସି ଗୁଣୁ ନାଦ କରଇ ।୫।
ଫୁଲ୍‌ବଲା କାଞ୍ଚୀଦାମରେ ରସ
ଅଚୁଲକୁ ଭୁଲ କେବା ସରସ
ଶାଢ଼ୀ ସଜାଡ଼ି ଏ ଫୁଲ-ରଚିତ
ସତେ କି ସୁନ୍ଦର ହେଲା ସୁଚିତ ! ।୬।
ଫୁଲ ବନୋଦଅ ସୁମନ ହାସୀ
ଫୁଲ ସ୍ୱଣୀ ରୂପ କି ଶୋଭା ରାଶି !

ଭାବ ତାହା କବ ଉପମା ମୁକ
ନୀଳକଣ୍ଠ ସେହ୍ନ ପଦ ସେବକ ।୭।

ଯଥାରାଗ

ଫୁଲର ଈଶ୍ୱର ଫୁଲେ ପ୍ରେମଭର
ଫୁଲେଶ୍ୱରୀ ବେଶ ସାଜ ହେ
ଫୁଲ ମାଳ ମାଳ ଫୁଲେ ମଣ୍ଡିଆଳ
ଫୁଲ୍ଲ ବଦନା ଯେ ମଞ୍ଜି ହେ
ପ୍ରଫୁଲ୍ଲିତ ଚସେ ଭଳ
ଫୁଲ୍ଲ-କମଳେ ଯଥା ଭ୍ରମଳ ହେ ।୧।
ରାଜୀବ ନୟନା ରଙ୍ଗ ବରେ ସିନା
ସାଜ ସାଜ କର ଦୁଇ ହେ
ଲାଜ ଲାଜ ହୋଇ ଦ୍ୱିଜରାଜ-ମୁଁହୀ
ମଞ୍ଜି ରାମ-ଗଳେ ଦେଇ ହେ
ଆଜ ରାତ ଭାର ଧନୀ
ରଜ ହୋଇ ବୋଲୁଛନ୍ତ ବାଣୀ ହେ ।୨।
ପାଜ ମଦନର ସାଜବା ବେଭାର
ଭାଜବ କି ଏହ୍ନ ପର ହେ
ଫୁଲର ଈଶ୍ୱରୀ କୃପାରେ କଙ୍କରୀ
ଶସ୍ତ୍ର ନାହିଁ କରେ ଧର ହେ
ଧନୀ ବାକ୍ୟ ଶୁଭୁହସି
ଆହା ସଖି ରେ ବୋଲୁଣ ଭାଷି ହେ ।୩।
ଫୁଲ-ଶରାସନ ଫୁଲ-ଧନୁର୍ଗୁଣ
ଫୁଲର କମାଣ ଛୋର ହେ

ବାମଙ୍କରେ ଦେଇ                    ଦକ୍ଷିଣରେ ନେଇ
ଫୁଲଶରେ  ଦେଇ ଭୃଙ୍ଗ ହେ
କରଯୋଡ଼ି ଧୀରେ କହ୍ନ
ଏବେ ମଦନ ସଜିଲ ସଙ୍ଗ ଗୋ ।୪।

ନିକୁଞ୍ଜ ସଦନେ                    ବସାଇ ସୁମନେ
ବୀଣା ବାଏ ଗୁଞ୍ଜଧର ହେ
ଝିଙ୍କି ଶରାସନ                    ଫୁଲ ଶରମାନ
ଧନୀ ହେଲେ ଅଗ୍ରସର ହେ
ପ୍ରଭୁ ସଙ୍ଗେ ନିଭଙ୍ଗରେ
ବାମେ ନାଚନ୍ତି କବା ରଙ୍ଗରେ ହେ ।୫।

ଭାବ ସେ ମୂରତି                    ସେହିକାଳ ଗତି
ଦ୍ରବ ଯିବ ହେଲେ ଫେର ହେ
ସ୍ୱମ ପ୍ରେମ ସ୍ୱତି                    ଚିନ୍ତି ଦୀନ ସ୍ୱତି
ନୀଳକଣ୍ଠ ହେଲ କବ ଧେ
ଛବିଧର ଦୟା ହେଉ
ଜୀବ ତୋହ ଭବେ ଲଭିଯାଉ ହେ ।୬।

## ପୟାର

ସଖୀସଙ୍ଗେ ନାନାରଙ୍ଗେ ଭ୍ରମେ ଶ୍ୟାମ ତନୁ
କଥାଛଳେ କୁତୂହଳେ ଫୁଲ ତୋଳେ ବନୁ ହେ ।୧।
ଫଳବେଶ ହସ ହସ ସରଯୂ-ପୁଳିନ
ବାଲିକୁଦେ ଅତି ମୋଦେ ବସି ବେନି ଜନ ହେ ।୨।
ଧନୀ ମୁଖ ଅବନତ ଦେଖି କହେ ହରି
କପାଁ ତୁମ୍ଭେ ହେଉ ମାନି ରସିକା-ଚତୁରି । ।୩।

ଏହି ବନ ତ ସଦନଠାରୁ ମନୋହର
ଯେ ସଉଧ ଏ ସଉଧ ଦେଖ ନାରୀବର ଗୋ ।୪।
କଞ୍ଚୁକିନ ଲଣି ଘନ ଥାନ୍ତି ଏଥି ରହି
ଗୃହୁଶୀଳା ଏ ସୁଶୀଳା ଦେଖ ପ୍ରାଣସହି ଗୋ ।୫।
ସହଚରୀ ଯେ ସୁନାରୀ ବେଢ଼ିଛନ୍ତି ସାଥ
ଗାଏ ଭାବ ଏ ଶୁକ-ବୀ କବିତା ସଙ୍ଗୀତ ଗୋ ।୬।
ନାଗେଶ୍ବର ଦରବାର ପରି ଦିଶେ ଶୋଭା
ଅକ୍ଷ ଲୀଳାରେ ସୁଶୀଳା ! କରେ ମନ ଲୋଭା ଗୋ ।୭।
ଏହି ସ୍ଥାନ ନୃତ୍ୟସ୍ଥାନ ପରାଣ ସଜନି !
ବାରେ ନଚୁ ଗିତକୁରୁ ତୋର ନାସାମଣି ଗୋ ।୮।
ପ୍ରିୟ ବାଣୀ ପ୍ରିୟା ଶୁଣି ହେଲେ ଉଲ୍ଲସିତ
ଶୁକ ନାସା ବରଯୋଷା କରିଲେ ଗୃଳିତ ହେ ।୯।
ହସି ରାମ ଗୁଣଧାମ କୋଳେ କଲେ ଯାଇଁ
ହରଷିତେ ଯେଣୁ ମିତେ ତନ୍ତୁଁ ଉଭା ହୋଇ ହେ ।୧୦।
ବେନି ଜନ ମୋଦମନ କରନ୍ତି ଗମନ
ଭଣେ ନୀଳ ରଘୁବାଳ ଶ୍ରୀପଦ ଶରଣ ହେ ।୧୧।

ଶ୍ଳୋକଃ

**ତତୋ ଗଚ୍ଛନ୍ ଭଗବାନ୍ ଜାନକ୍ୟା ସହିତଃ ପ୍ରଭୁଃ**
**ମାର୍ଗେ ଭାଷତି ସୀତା ମେ ବଚନଂ ନାଥ ! ସଂଶୃଣୁ ।୬୦**

ଦୀର୍ଘ

ପଥେ ଯାଉ ଧୀର ଧୀର        ସଖୀ କରେ ଛନ୍ଦ କର
ନାନା ପରିହାସ ଭାଷ ଭାଷି

ଶିରୀଷ-ମୃଦୁ-ପିତୁଳା ତିଗ୍ମଶ-ଜରକା ବାଳା
ଅଳ୍ପ ଦୂରେ ଛଦେ କାଶହାସୀ ହେ
ନାଥ ହେ
ରସିକ ମଣ୍ଡଳ ଅଳଙ୍କାର
ଶୁଣ ବାଣୀ ପ୍ରୀତ-ପୁରନ୍ଦର ହେ ।୧।

## ସୀତୋବାଚ

ଶ୍ଳୋକଃ

**ଗନ୍ତୁଂ ନ କଣ୍ଟକାକୀର୍ଣ୍ଣେ ବିଷମେ କାନନେ ପଥି**
**ପାରୟାମି ମହାବାହୋ ! କ୍ଷଣଂ ତିଷ୍ଠ ଭବତାଽଧୁନା ।୨୧**

ଦୀର୍ଘ

ରାମ ହେ କାମ-ସୁନ୍ଦର ମହାବାହୁ ହେ କିଶୋର
ପ୍ରେମ-ମନ୍ତ୍ର-ଦୀକ୍ଷାଗୁରୁ ବର,
ଶୁଣ ମୋ ଦୁଃଖ କାରଣ ଅହେ ଚାପଶୃଙ୍ଗ-ଧାରଣ
ନାରାୟଣ ହେ ତାରଣ-କାରୀ ହେ
ନାଥ ହେ
ଅବଳା ମୁଁ କୋମଳ-ଜୀବନ
ତୁମ୍ଭେ ମହାଭୁଜ ବଳବାନ ହେ ।୧।
ଅହେ ଶରଣ ବତ୍ସଳ ତୁମ୍ଭ ସଙ୍ଗେ ବନସ୍ଥଳ
ଭ୍ରମି ଏ କଣ୍ଟକାକୀର୍ଣ୍ଣ ସ୍ଥାନ

ଦେଖ ପଦଦେଶ କ୍ଷତ ବହୁ ଉଠଇ ଶୋଣିତ
ଚଲି ନପାରେ ମୁଁ ଶ୍ୟାମଘନ ହେ
ନାଥ ହେ
ପଦ ତବ ବଜ୍ରହୁଁ କଠିନ
ବିଶେଷରେ ନୃପତି-ନନ୍ଦନ ହେ ।୨।
ବାଲକାଳେ ଋଷିମେଳେ ଭ୍ରମିଛ କାନନ ସ୍ଥଳେ
ପଦେ ଶୋଭେ ଧ୍ୱଜ ବଜ୍ରାଙ୍କୁଶ
କି ଭୟ ଅଛି ତୁମ୍ଭର ମୁଁ ତ ଅତି ସୁକୁମାର
ସଦା କରେ ରାଜପୁରେ ବାସ ହେ
ନାଥ ହେ
ପଦ ବ୍ୟଥା କରେ ଅତିଶୟ
ବସ ଏଥି ଦଣ୍ଡେ ଦୟାମୟ ହେ ।୩।

ଶ୍ଳୋକଃ

**କାରୁଣ୍ୟପୂର୍ଣ୍ଣବାକ୍ୟେନ ପ୍ରିୟାୟାଃ ରଘୁନନ୍ଦନଃ**
**କାନ୍ତା ମାନସଶାନ୍ତ୍ୟର୍ଥଂ ତସ୍ଥାବତିସ୍ମିତ ଦୟାନିଧିଃ ।୨୨**

ଖର୍ବ

ସତୀ ବାଣୀ କି ସେ ଜାଣି ସୁଧାନିଧି ହେଲା
ଚନ୍ଦ୍ରକାନ୍ତ ରଘୁସୁତ ଧୈର୍ଯ୍ୟ ତରଳିଲା ହେ ।୧।
ପ୍ରିୟାଙ୍କର ଦୁଃଖଭର ବିକଳ ବଚନେ
ଅଶ୍ୱାସିଣ ରଘୁରାଣ କହିଲେ ଏସନେ ହେ ।୨।
ଅଗୋ ବାଳେ ଗୁରୁଶୀଳେ କ୍ଷଣେ ରହ ରହ
କିବା ଇଚ୍ଛା ମନୋବାଞ୍ଛା ଆନନ୍ଦରେ କହ ଗୋ ।୩।

ମୋର ସଣ ରେ ପରାଣ-ସଙ୍ଗିନୀ କିଶୋରୀ !
ଯାହା ମନ ଅଛି ଧନ ତାହା ମୁହିଁ କରି ଗୋ ।୪।
ତୋତେ ଦୁଃଖି ଶଶୀମୁଖୀ ଦେଖି ମୋର ମନ
ଉତସ୍ତତ ହୁଏ ସତ୍ୟ ଅରେ ଜୀବଧନ ରେ ।୫।

ଶ୍ଳୋକଃ

**କିଂ ନୋ ମନୋ ନାଥ ତବ ପ୍ରିୟାୟାଃ**
**ଜାନାସି ବଞ୍ଚୀହ ତଥାପି ଚେତଭ୍**
**ତ୍ୱତ୍ସଙ୍ଗ ମାଲାପରସଂ ବିନା ମେ**
**ନାନ୍ୟା ମତିଃ ପ୍ରାଣପ୍ରିୟ ସଦାହି ।୬୩**

ପୟାର

ଅନ୍ତର୍ଯ୍ୟାମୀ ତୁମ୍ଭେ ସ୍ୱାମୀ ଅଟ ମାୟାଧର
ନଜାଣ କି ମାନସେ କି ଇଚ୍ଛା ଅଛି ମୋର ହେ ।୧।
ତୁମ୍ଭ ବିନେ ମୁଁ ତ ଦିନେ ନପାରଇ ରହି
ମହାଦୁଃଖ ପଦ୍ମମୁଖ ଭ୍ରମିବାରେ ହୋଇ ହେ ।୨।
ତୁମ୍ଭ ସଙ୍ଗ କଥାରଙ୍ଗ ଲଭିବାକୁ ଅତି
ହୁଏ ବାଞ୍ଛା ମୋର ଇଚ୍ଛା ରଖ ରଘୁପତି ହେ ।୩।
ସଦା ଥିବ ଧନ ଛବି ମୁଁ ତୁମ୍ଭର ପାଶେ
ଏ ଉପାୟ କର ଅୟି ନୀଳକଣ୍ଠ ଭକ୍ତେ ହେ ।୪।

ଶ୍ଳୋକଃ

**ଶିରୀଷ ମୃଦୁ ତନୁଙ୍ଗି ! ଯଦି କଷ୍ଟଂ ବିମନ୍ୟସେ**
**ସ୍କନ୍ଧଂ ମମ ସମାରୋହ ଭ୍ରାମୟାମି ବନାଦ୍ୱନଂ ।୬୪**

ଯଥା ରାଗ

ଭୂମି ନନ୍ଦିନି ! ବାରିଜାକ୍ଷୀ ଧନ !
ରତିମୁଖ-ବିମୋହନ ଗୋ
ସାରିବା କଷଣ ପାରିବାରେ ଧନ
ହାରିବା ଜାଣୁ କି ପୁଣି ଗୋ
ନାରିକୁଳ ମଥାମଣି
ଖାରି ମଣ୍ଡୁଛୁ କି ଗଙ୍ଗାପାଣି ଗୋ ।୧।

ଛାର ଏ କଷଣ ସାର କଲ୍ ମନ
ହାର ମୋର ଉରଦେଶ ଗୋ
କାରଣ ଏ ଦିନ ବାରଣ-ଗମନା !
ତାରଣ ନୁହନ୍ତେ କ୍ଳେଶ ଗୋ
ମାର ମାରଣ ମୋହନା
ସାର କରି ସ୍କନ୍ଧେ ବସ କି ନା ଗୋ ।୨।

ଦୁଃଖ ଯିବ ସରି ସୁଖ ବିମ୍ବାଧରି !
ମୁଖରେ ଅସିବ ହାସ ଗୋ
ଆନ ତୁ ନକରି ମାନ ମୋର ଗିରି
ସାନ ମୁଁ ତୋ ପଦ ଦାସ ଗୋ
ଅସ ଅସ ସ୍କନ୍ଧେ ବସ
ରସରଙ୍ଗିନି ! ଦୁଃଖେ ନଭାସ ଗୋ ।୩।

କ୍ଷଣେ ଏହା ଏଣେ ବନେ ଯିବା ତେଣେ
ଚରଣେ ନୋହିବ ପୀଡା ଗୋ
ବାଣୀ ଶୁଣି ଏହା ଜାଣି ସ୍ୱର୍ଣ୍ଣ ଦେହା
ଆଣି ମନେ ହେଲ ବ୍ରୀଡା ହେ
ପାଣି ଧରି କହେ ନୀଳ
ଏଣୀନେତ୍ରୀ ହୋଇବେ ବିକଳ ହେ ।୪।

ଶ୍ଳୋକଃ

**ବିହସ୍ୟ ଜାନକୀ ରାମଂ କଥୟାମାସ ହେ ପ୍ରଭୋ**
**ସର୍ବଥା ନୋଚିତଂ ନାଥ ସ୍କନ୍ଧାଧିରୋହଣଂ ମମ ।୨୫**

ଝଙ୍ଗ

ହସି ଧନୀ କହେ ବାଣୀ ଅହେ ପ୍ରାଣନାଥ
ମୋହ ଲୁଚ ପାଇଁ ସାର କର ଅସାର ତ ହେ ।୧।
ମୁଁ ତ ନାରୀ ଗୃହଧାର ! ତୁମ୍ଭେ ମୋ ଦେବତା
ମୋତେ ବହି ନେବ କାହିଁ ଏ ନୁହେ ବ୍ୟବସ୍ଥା ହେ ।୨।
ଶ୍ରୀପଦର ସେବା ସାର ମୋର କାଳେ କାଳେ
ହେବ ଦୋଷ ସ୍କନ୍ଧଦେଶ ଆରୋହଣ କଲେ ହେ ।୩।
ଏ ଅବଧି କ୍ଷମାନିଧି ନହେଉ ଆଦେଶ
ମୋର ମୂଳ ପଦ ତଳ ସେବା ନୀଳ ଭୂଷ ହେ ।୪।

ଶ୍ଳୋକଃ

**ଶୃଣୁ ମେ ବଚନଂ ଦେବି ! ଅୟି କୋକିଳଭାଷିଣି !**
**ନାନା ବିନୋଦ କାର୍ଯ୍ୟାର୍ଥ ମବତାରଂ ଧରାମ୍ୟହଂ ।୨୬**

ପୟାର

ପିକବାଣି ! ସବୁ ଜାଣି ପାଗଳୀ ହେଲ
ତେଣୁ ସିନା ଗୋ ନବୀନା ଏମନ୍ତ ଭାଷିଲ ଗୋ ।୧।
କାଳେ କାଳେ ଧରାତଳେ ହୁଏ ଅବତାର
ବିନୋଦନ ଲୀଳାମାନ କରଇ ପ୍ରଚୁର ଗୋ ।୨।
ଏ ଏକାନ୍ତ ସ୍ଥଳ ମିତ କେ ପାରଇ ଜାଣି
ତୁମ୍ଭେ ମୋର ମୁଁ ତୁମ୍ଭର ସର୍ବ ସୁଲକ୍ଷଣୀ ଗୋ ।୩।

ସୀତାରାମ ଏହି ନାମ ଜଗତେ ବଦିତ
ତୁମ୍ଭେ ଅଗ ପୃଷ୍ଠଭାଗ ମୁହିଁ ସିନା ସ୍ଥିତ ଗୋ ।୪।
ତୁମ୍ଭେ ଜ୍ୟେଷ୍ଠ ମୁଁ କନିଷ୍ଠ ପରାଣ ସଜନ !
ଆସ ଆସ ସ୍କନ୍ଧେ ବସ ବାରଣଗମନ ଗୋ ।୫।
ଶୀଘ୍ର ଅତି ରେ ସୁଦନ୍ତି ! ଯିବ ତୋ କଷଣ
ବୋଲେ ନୀଳ ପଦତଳ ନାଥ୍ୟ ମୁଁ ଶରଣ ଗୋ ।୬।

# ସ୍କନ୍ଧାରୋହଣ

ଶ୍ଳୋକଃ

**ଶ୍ରୀରାମବାଗ୍ ନବବେଶସଂଯୁତା**
**ଜହାସ ମନ୍ଦଂ ଜନକାତ୍ମଜା ସତୀ**
**ତତୋଽବଦତ୍ ବାକ୍ୟମିଦଂ ପତିଂ ତଦା**
**ଯଦିଚ୍ଛସି ତତ୍ କୁରୁ ରମ୍ୟବିଗ୍ରହ ! ।୨୬**

ଝୀଙ୍କ

ମନ୍ଦେ ମନ୍ଦେ ଛନ୍ଦେ ଛନ୍ଦେ ହସି ମହାସତୀ
କଟିଦେଶେ ପଟ୍ଟବାସେ ଛନ୍ଦ ଦୃଢ଼େ ଅତି ହେ ।୧।
ସୁବକ୍ଷକୁ କାଞ୍ଚୁଲିକୁ କାନ୍ତୁଣ ପିନ୍ଧିଲେ
ବାମ କରେ ଶିରେ ଧୀରେ ଅଞ୍ଜୁଶିଣ ଦେଲେ ହେ ।୨।
ଅପାଙ୍ଗେ ମୋଦମନେ ଧୀରେ ଦେଇ ଦୃଷ୍ଟି
ରଘୁନାଥେ ନେହ ଉପତେ ବୋଇଲେ ବାମ୍ଭୋଷ୍ଠୀ ହେ ।୩।
ଆସ ଆସ ପ୍ରାଣଈଶ ଭ୍ରମିବା କାନନ
ଇଚ୍ଛା ତୋର ଯାହା କର ମୁଁ ତ ପରିଜନ ହେ ।୪।

ସତୀ ବାଣୀ ରଘୁମଣି ହୃଦ ମୋଦ କରେ
ଅସ ଅସ ସ୍କନ୍ଧେ ବସ ନୀଳକଣ୍ଠ ବୋଲେ ହେ ।୫।

ଶ୍ଳୋକଃ

**ବସନ୍ତୀଂ ସ୍କନ୍ଧ ଦେଶେ ତାଂ ସୀତାଂ ରାଜୀବଲୋଚନଃ**
**କାନନେ ଦର୍ଶୟାମାସ ନାନାବିଧଲତାତରୂନ୍ ।୨୮**

ଦୀର୍ଘ

ଗିରି ଜେମା ଶିରୀଷାଙ୍ଗି   ଶୁଣ ରେ ଜୀବନ ସଙ୍ଗି !
ଭ୍ରୂଭଙ୍ଗୀ ମାନଙ୍କେ ରାମରାନୟ
ସ୍କନ୍ଧଦେଶେ ଶୃଙ୍ଗମୁହାଁ   ବସନ୍ତ ଆନନ୍ଦ ହୋଇ
ପ୍ରଭୁ ବକ୍ଷେ ପଦ ଦୁଇ ଶୋହେ ଗୋ
ଧନ୍ୟ ଗୋ
ନୀଳ ଘନେ ଶତଦଳ ଫୁଟେ
ଅଳି ଅସି ବାସେ ତହିଁ ଲୁଟେ ଗୋ ।୧।
ଦଶେ ଅହା ଅତ ଶୋଭା   ନୀଳ ପ୍ରାସାଦରେ କିବା
ସୁବର୍ଣ୍ଣ କଳଶ ଅଚ୍ଛୁ ବସି
କିବା ନୀଳ-ନୀରଧରେ   ସୌଦାମିନୀ ଗତ କରେ
ତେସନ ସୁଷମା ଯାଏ ଦଶି ଗୋ
ଧନ୍ୟ ଗୋ
ଠାକୁରାଣୀ ହାସ ଦର ଦର
ଠାକୁରଙ୍କ ଛଳ ଶ୍ଳେଷ ଗିର ଗୋ ।୨।
ହସି ଭାଷନ୍ତ ଶ୍ରୀରାମ   ଅରେ ସର୍ବ ଗୁଣ ଧାମ
କୋଣ ଭାରେ ବନ୍ଧୁର ମୋ ସ୍କନ୍ଧ

ଶତ୍ରୁଙ୍କର ଶରଘାତେ ବକ୍ଷଦେଶ ସେହ୍ନ ମତେ
ଦୁଃଖ କିବା ହୁଏ ହୃଦ ଗୃନ୍ଦ ଗୋ
ଧନ୍ୟ ଗୋ
ମନ ଦଅ ବନ ଦୃଶ୍ୟ ରଙ୍ଗ
ପ୍ରକୃତ ରଖିଛୁ ଶୋଭା ସାଜ ଗୋ ।୩।

ପ୍ରଫୁଲ୍ଲ କୁସୁମ ପରେ ଅଳି ବୁଲେ ଗୁଣୁସ୍ୱରେ
ଯେସନ ରସିକ ନବୀନାରେ
ପ୍ରେମେ ଗୃଣ୍ଠୁ କର ଅନ୍ତ ମନ ହରେ ଗୋ ସୁଦନ୍ତ !
ସେହ୍ନ ଶୋଭା ଏଥି ଏକାଧାରେ ଗୋ
ଧନ୍ୟ ଗୋ
ଭ୍ରମର ବସିଛୁ ମଲ୍ଲୀଫୁଲେ
ବିପରୀତ ନିଶାଚନ୍ଦ୍ର କଳେ ଗୋ । ୪ ।

କୁରୁବକ ଏ ଅଶୋକ ଦେଖ ତୁ ଅରେ ଯାବକ—
ଶୋଭନୀ ସେବକ କଥା ଘେନ
ମାଳତୀ ଅରେ କେତକୀ— ବିମୋହନା ରସବତୀ
ନିଆଳି ତୋ ନଖ ଶୋଭା ଜିଣି ଗୋ
ଧନ୍ୟ ଗୋ
ଚମ୍ପକ ତୋ ଅଙ୍ଗୁଳି ସମାନ
ଲୁଚି ଯାଇ ବାଳଜ-ବଦନ ଗୋ ।୫।

କୋକିଳ କଳ ସଙ୍ଗୀତ ଶୁଣି ଶୁଣି ପ୍ରାଣମିତ
ସାଗ୍ନି ସ୍ୱର ବାଳଜ-ନୟନା
କପୋତ କରୁଣ ଗୀତ ରାଓ କରେ ବିଷାଦିତ
ପକ୍ଷୀ ରଣି କେ କରେ ଗଣନା ଗୋ
ଧନ୍ୟ ଗୋ
ସମ୍ବର ଏ ଡ଼ମରୁ ମଧ୍ୟମା
ଅମ୍ବୁରୁହ ନେତ୍ରି ! ପ୍ରିୟ ବାମା ଗୋ ।୬।

ଝିଙ୍କକୁ ଶଙ୍କ ନା ଧନ    ରଙ୍କର ପ୍ରିୟ ରତନ
ଦର ଦଏ ଶାରଦୂଳ ରଢ଼ି
ଚଏ ମୃଗ ପନ୍ତି ପନ୍ତି    ବାଟଏରେ ଯାଉଛନ୍ତି
ବଣା ଏଣୀ ଦେଖ ସବୁ ଛାଡ଼ି ଗୋ
ଧନ୍ନ ଗୋ
ଚିର ଦେଖ ଶିଶ୍ୱଷ ଅଙ୍ଗି ! ରେ
ଝରିଯାଏ ଝରଣା ଭଙ୍ଗିରେ ଗୋ ।୭।

ଦେଖି ଏ ଦୃଶ୍ୟ ମୋହନ    ହରଷିତ ସୀତା ମନ
ପ୍ରେମମୟ ହେଲ ବନ ଦେଶ
ଅମରେ ହରଷ ଅତି    ପୁଷ୍ପ ବୃଷ୍ଟି ବରଷନ୍ତି
ଗାନ କଲେ ଅପସରୀ ବଂଶ ଗୋ
ଧନ୍ନ ଗୋ
ଦୁନ୍ଦୁଭି ନିନାଦ ଘନ ଘନ
ଜୟ ଜୟ ଭାଷି ଋଷିଗଣ ଗୋ ।୮।

ଧନ୍ୟ ସେ କାନନ ସ୍ଥଳ    ଧନ୍ୟ ପୂର୍ବ ପୁଣ୍ୟଫଳ
ଧନ୍ୟ ସୀତା ଧନ୍ୟ ରଘୁପତି
ଧନ୍ୟ ସରୟୂ ପୁଳିନ    ଧନ୍ୟ ଜୀବ ଜନ୍ତୁଗଣ
ଧନ୍ୟ ତରୁ ଲତା ପନ୍ତି ପନ୍ତି ଗୋ
ଧନ୍ନ ଗୋ
ଦେଖିଲେ ସେ ସୀତାରାମ ରସ
ଜନ୍ମ ଧରି କେଉଁ ଦେବ ଅଂଶ ଗୋ ।୯।

ଚଳନ୍ତେ ଅତି ସୁନ୍ଦର    ଦଶେ ଦେଖି କଳେବର
ମେଘ ସଙ୍ଗେ ବିଜୁଳି କି ଯାଏ

ସେ କାଳ ମଧୁର ଗତ ଅହା ସେ ମୋହନ ମୂର୍ତ୍ତି
କବ ବାଣୀ ମୂକ କର ଦିଏ ଗୋ
ଧନ୍ୟ ଗୋ
ଛବି ଧର ଭାବ ନିତ ନିତ
ନୀଳ ଭାଷେ ଯାଉ ଦିନ ରାତ ଗୋ ।୧୦।

ଶ୍ଳୋକଃ

**ବିଭାବୟନ୍ତି ସା ଦେବୀ ପ୍ରେମଗର୍ବାନ୍ୱିତା ସତୀ**
**ମହାଭାଗ୍ୟବତୀ ଗୃହଂ ସଫଳଂ ମମ ଜନ୍ମହି ।୨୯**

ପୟାର

ସ୍କନ୍ଧେ ଥାଇ ଗୃନ୍ଧମୁଁ ହା ଭାବନ୍ତି ମାନସ
ପ୍ରେମେ ଅତି ଗର୍ବ ମତ ହୋଇ ହସ ହସ ହେ ।୧।
ଅଦ୍ୟ ମୋର ଜନ୍ମ ସାର ଧନ୍ୟ ମୋର ଭାଗ୍ୟ
ଏକାକିନୀ ରଘୁମଣି ସଙ୍ଗକୁ ମୁଁ ଯୋଗ୍ୟ ହେ ।୨।
କେ ନଥିଲେ ରାସସ୍ଥଳେ ମୁଁ ଏକା ରସିକା
ତେଣୁ କର ଗୃପଧାରୀଙ୍କର ପ୍ରେମାଧିକା ହେ ।୩।
ମୋତେ ପୁଣି ବନେ ଆଣି କଲେ କେତେ ରଙ୍ଗ
ସ୍କନ୍ଧ ଦେଶେ ମନ ତୋଷେ ବହିଲେ ଶ୍ରୀରଙ୍ଗ ହେ ।୪।
ଜନ୍ମ କାଳ ମୋ ସଫଳ ଧନ୍ୟ ପିତାମାତା
ନୀଳ ଭାଷେ ଗର୍ବବଶେ ହୁଏ ସବୁ ବୃଥା ହେ ।୫।

ଶ୍ଳୋକଃ

**ତତୋ ଯୋଗେଶ୍ୱରୋ ରାମଃ କ୍ଷଣାଦନ୍ତର୍ହିତୋଽଭବତ୍**
**ଧରଣ୍ୟାମପତତ୍ ସୀତା ସୁନ୍ଦରୀ କ୍ଷତବିକ୍ଷତା ।୩୦**

ପୟାର

ମାୟାଧର ସୀତାଙ୍କର ଜାଣି ଗର୍ବ ଭାବ
ଅଡ଼ କର ସ୍କନ୍ଧ ହର ଗଲେ ଅନ୍ୟ ଠାବ ହେ ।୧।
ସ୍କନ୍ଧପରୁ ସେ ରମ୍ଭୋରୁ ଧରାତଳେ ପଡ଼ି
ଦନ୍ତ ପନ୍ତି ଓଷ୍ଠେ ଅତିଶୟ ଭାବେ ଜଡ଼ି ହେ ।୨।
ବହେ ରକ୍ତ ଅସ୍ତବ୍ୟସ୍ତ ବସନ ଭୂଷଣ
ମୋହଗତ ଦଣ୍ଡେ ମାତ୍ର ଦେହେ ନାହିଁ ଜ୍ଞାନ ହେ ।୩।
ନେତ୍ର ଫେଇ ଯେ ଅନାଇଁ ଦେଲେ ମହାସତୀ
ନାହିଁ କେହି ଏକା ସେହି କାହିଁ ଗଲେ ପତି ହେ ।୪।
ଏକି ସତ ସ୍ୱପ୍ନବତ ମଣି କୃଶୋଦରୀ
କ୍ଷଣି ପରେ ଡାକେ ଧୀରେ ଅୟ ଗୃହଧାରି ହେ ।୫।
ଏ କି କୃତ୍ୟ ରଘୁନାଥ ନଶୁଣନ୍ତି କେହି
ନୀଳ ଗୀର ଶୋକଭର ହେଲେ ବଇଦେହୀ ହେ ।୬।

ଶ୍ଲୋକଃ

**ହା ନାଥ ରଘୁନାଥେତି ଚକ୍ରନ୍ଦ ଜନକାତ୍ମଜା**
**କ୍ୱନୁ ତିଷ୍ଠସି ପ୍ରାଣେଶ ! ଆଗଚ୍ଛ ମମ ସନ୍ନିଧିଂ ।୩୧**

ଦୀର୍ଘ

ହେ ନାଥ ହେ ରଘୁନାଥ   ଅନାଥିନୀ ସୀତାନାଥ
ପୁରୁଷାର୍ଥ ସବୁ ବ୍ୟର୍ଥ କର
ଅନର୍ଥକୁ ଭାବ ଅର୍ଥ   ସାର୍ଥ କର ମନୋରଥ
ଦଶରଥ ନନ୍ଦନ ଶ୍ରୀହରି ହେ
ନାଥ ହେ
ପରମାର୍ଥ-ତତ୍ତ୍ୱ-ସିନ୍ଧୁ ରାମ
କି ଅର୍ଥରେ ମୋତେ ହେଲ ବାମ ହେ ।୧।

ବାରିଜ ନୟନ ନାରୀ ପାରୁଛୁ ମୁଁ ଗଙ୍ଗାବାରି
ଖାରି ବୋଲି ହରି ହେ ମନରେ
ଭାରି କରାଇଲି ହାର ଯାର କଣ୍ଠେ ରାଜ୍ୟଭାର
ସାର ଭୁଣ୍ଡ ମଣ୍ଡିଛୁ ଅସାରେ
ନାଥ ହେ
ହାର ମୋତି ବାର ଫିଙ୍ଗି ପାଣି
ଧାର ଧାର ଗୁଞ୍ଜି ରଖି ପୁଣି ହେ ।୨।

ଅଙ୍କ ଶୟନାକୁ ଟଙ୍କ— ରତନ, ଦେଲି କଳଙ୍କ
ଶଙ୍କର ତାରକ ଅପ ଅସ
ହସି ପଡ଼େ ଯାଅ ଭାସି ଦାସୀ ହେଉଛୁ ବିନାଶି
ରାଶି ରାଶି ଦୁଃଖ ଦେଲ ପ୍ରାସ ହେ
ନାଥ ହେ
କେଉଁ କୁଟେଞ୍ଜି କଞ୍ଜ ନେନ ଅଛ
ସ୍ମିତ-ନାରୀ-ମଞ୍ଜୁ-ପୁଷ୍ପ-ଗୁଚ୍ଛ ହେ ।୩।

ପ୍ରେମ ରସରେ ଜଡ଼ାଇ ସଙ୍ଗିନୀ ସଙ୍ଗ ଛଡ଼ାଇ
ଅନୁରାଗ ବଢ଼ାଇ କି ରୀତ
ଧରଣୀ ତଳେ ଗଡ଼ାଇ ମୋତେ ପାଶରୁ ତଡ଼ାଇ
ଦୁଃଖରେ ସଢ଼ାଇ ରଘୁପତି ହେ
ନାଥ ହେ
ବଢ଼ାଇବ କେଉଁ କୀରତି କି
ଉଡ଼ାଇବ ସିନା ପୀରତିକି ହେ ।୪।

ଘୋର ଯାମିନୀରେ ମୋର ବିନାଶ ହେଲେ କି ତୋର
ଚିତ୍ତଚୋର ନୋହିବ କଷଣ

ଅପଖ୍ୟାତି ସଙ୍ଗେ ପାପ    ଧାପ ଦେବ ହେ ଅମାପ
ଗୁଣଧର ରସିକ ସୁଜାଣ ହେ
ନାଥ ହେ
ପ୍ରେମ କନ୍ଦଳିକି ଦଳି ଦେଇ
ଚଳି କେଉଁଣେ ଗଲ ରଘୁସାଇଁ ହେ ।୫।
ପ୍ରୀତିର ପରମ ସ୍ଥିତି    ଚିତ୍ତ ଏ କି ହେ ଶ୍ରୀପତି
କ୍ଷିତିରେ କ୍ଷତିକି କଲ ସାର
ପତି-ଅନୁରାଗି-ସତୀ    ରତି ଛନ୍ତି ତୁମ୍ଭ କତି
ସ୍ମୃତିରେ ଅସନ୍ତୋ ଅବାଗୁର ହେ
ନାଥ ହେ
କ୍ଷମାନିଧି ପଦରେ ବିନତି
ନାଳ ଭିଷେ ରଖ ସୀତାପତି ହେ ।୬।

## ଚତୁଷ୍ପଦୀ

ଆହା ନାଥ, ପ୍ରାଣନାଥ    ରଘୁନାଥ ନାଥ ନାଥ ହେ
ଅନାଥିନୀ ନାଥ    ଅଟ ହେ ସୀତା ନାଥ
ତୁମ୍ଭେ ତ ପରମ ପୁରୁଷାର୍ଥ ।୦।
ପୀତବାସ ଗୀତ ଗାଇ ଆସ
ଚିତ୍ତ ହର ପ୍ରୀତି ମନେ ଭାଷ
ରସସିନ୍ଧୁ ହସ—    ହସ କଥା ନୁହେ
ଜୀବ ଯିବ ଜୀବଧବ-ପଥ ହେ ।୧।
ଛଡ଼ାଇ ସଜନୀ ରଜନୀରେ
ବୁଡ଼ାଇ ଟେସ ପ୍ରେମ-ନଦୀ-ନୀରେ

ଭଡ଼ାଇ ଅଣିଲ ଜଡ଼ାଇଣ ଦେଲ
ଛଡ଼ାଇଲ ମୋର ମନୋରଥ ହେ ।୨।
ଯୋଷା ମୁଁ ନାଶାରେ ଯିବା କାହିଁ
କେଇଚପ୍ପା କଲ ରଘୁସାଇଁ
ଖସାଇ ବସନ ଲସାଇଲ ଜ୍ଞାନ
ହସାଇବ ଆସ ଆସ ଏଥ ହେ ।୩।
ସରିଲ ବାରିଜ ନୟନ ହେ
ମରିଲ ଏକାକୀ କାନନ ହେ
ଧରିଲ ତୋ ପଦ ସାରିଲ ବିପଦ
ବୋଲି ଚିନ୍ତା କରୁ ଥାଏ ରଥ ହେ ।୮।

ଶ୍ଳୋକଃ

**ତ୍ରିଦଶ କୁମୁଦ ଚନ୍ଦ୍ରୋ ଦାନବାମ୍ଭୋଜଚନ୍ଦ୍ରଃ**
**ସକଲ ଭୁବନ ଚନ୍ଦ୍ରୋ ଯୋଗିନାଂ ଜ୍ଞାନ ଚନ୍ଦ୍ରଃ**
**ବଚନ ରୁଚିର ଚନ୍ଦ୍ରୋ ମୈଥିଲୀ ନେତ୍ର ଚନ୍ଦ୍ରୋ**
**ଦୁରିତ ତିମିର ଚନ୍ଦ୍ରଃ ପାତୁନୋ ରାମଚନ୍ଦ୍ରଃ ।୩୬**

ଶଙ୍କରାଭରଣ

ରକ୍ଷାକର ହେ ଅମର-କୁମୁଦ-ଚନ୍ଦ୍ରମା
ରକ୍ଷ-କୁଳ-ଶତଦଳ-ଶଶୀ ସୁଖ ସୀମା ହେ
ଅଟହେ ତ୍ରିଭୁବନ ଚନ୍ଦ୍ର
ଏ ନିପୁର-କଳାକର ପ୍ରଭୁ ରାମଚନ୍ଦ୍ର ହେ ।୧।
ସୁଧାସମ ଅଟହେ ରାମ ବଚନ ମାଧୁରୀ
ସୀତା ନେତ୍ର ନିଶାନାଥ ତୁମ୍ଭେ ଗୃପଧାରୀ ହେ
ଯୋଗୀଗଣ ଜ୍ଞାନ-ଚନ୍ଦ୍ର

ଏ ବିପ୍ଳବ-କଳାକର ପ୍ରଭୁ ରାମଚନ୍ଦ୍ର ହେ ।୨।
ପାପତମ ନାଶେ ଯେବେ ତୁମ୍ଭେ ନାଶ ଯାନ୍ତି
ବାନ୍ଧ କର ବନ ଘୋର ମଧ୍ୟେ ଏକାକିନୀ ହେ
ତୁମ୍ଭ ହୃଦୟ-ମଣ୍ଡନା
ଭାସେ ନୀର କେତେ କାଳ ଲଭିବେ ବେଦନା ହେ ।୩।

ଶ୍ଳୋକଃ

**ଅନନ୍ତରଂ ରାମବିୟୋଗଦୂଃଖିତା**
**ଭ୍ରମନ୍ତି ନାର୍ଯ୍ୟଃ ସକଳା ବନେ ଯଦା**
**ତଦାଚ ତାସାଂ ଜନକାତ୍ମଜାକୃତା**
**ବିଳାପ ବାଣୀ ଶ୍ରୁତିଗୋଚରାଭବତ୍ ।୩୩**

ପୟାର

ଭାଷେ ହର ଚିତ୍ରକର ଜେମା ଶୁଣ ଏବେ
ପ୍ରଳାନରୁ ସର୍ବାଙ୍ଗରୁ ମକ୍ଷି ରାମ ଭାବେ ଗୋ ।୧।
ବନେ ବନେ କ୍ଷୁନ୍ନ ମନେ କରନ୍ତେ ପ୍ରୟାଣ
ଅଦୂରେ ତ କର୍ଣ୍ଣଗତ କଲେ ରୋଦନ ଗୋ ।୨।
କେ ବୋଲଇ ଅରେ ସହି କୋକିଳ-ସଙ୍ଗୀତ
କେବା କହେ ଏତ ନୁହେ ବୀଣାସ୍ୱନ ସତ ଗୋ ।୩।
କେହୁ କହେ ନାହିଁ ସହି ଶବଦ-ବିଳାପ
ସ୍ୱାମୀ ବିନେ ଘୋର ବନେ କରେ କେ ସନ୍ତାପ ଗୋ ।୪।
ବେଗ ବେଗ ସେ ଉଦ୍‌ବେଗ ମନେ ଚଳିଗଲେ
ବାଲ୍ମୀକ୍ରୁଦେ ସୁପ୍ରମୋଦେ ଏମନ୍ତ ଦେଖିଲେ ଗୋ ।୫।
ରଘୁନାଥ ପଦଚିହ୍ନ ପାଶେ ସୀତାଙ୍କର
ପଦ ଦେଖି ସୁଖ ଲେଖି ନୁହଇ କାହାର ଗୋ ।୬।

# ପଦଚିହ୍ନ

ଶ୍ଳୋକଃ

**ବଜ୍ରାଙ୍କୁଶ ଧ୍ୱଜୟୂତାନି ତଦା ଚ ନାର୍ଯ୍ୟଃ**
**ଚିହ୍ନାନି ତତ୍ର ଦ୍ଦୃଷ୍ଟେନ ପଦପଦ୍ମୟୋସ୍ତୁ**
**ଦୃଷ୍ଟ୍ୱାତିହର୍ଷବିଧୁରା ରଘୁନନ୍ଦନସ୍ୟ**
**ଆମନ୍ତ୍ରୟନ୍ ନିଜ ଶିରଃ ସହସା ରଜୋଭିଃ ।୩୪**

ଯଥାରାଗ

ସୁରସ ନିପୁଣୀ ବାଲକୁନ୍ଦେ ସିନା
ଦେଖିଲେ ଶ୍ରୀରାମ ପଦ ଗୋ
ଧ୍ୱଜ ବଜ୍ରାଙ୍କୁଶ ଦେଖି ହସ ହସ
ସରୋଜ ଧରଣେ ବରଦ ହେ
ଅହା ଭୁବନ ପାବନ
ସାଧୁଜନ ମଙ୍ଗଳ କାରଣ ହେ ।୧।
ଅଷ୍ଟାଦଶ ଚିହ୍ନ ଦଶେ ବଦ୍ୟମାନ
ସୀତାଙ୍କ ଗୃହ୍ଣ ଚରଣ ହେ
ତହିଁ ଉନବିଂଶ ଚିହ୍ନ ଦୁଏ ଦୃଶ
ମୁନ୍ଦରୀ ଏ ମୋହମାନ ହେ
ଶିରେ ବହିଲେ ସେ ଧୂଳ
ପ୍ରେମଭରରେ ନାଚ ମତୁଆଳୀ ହେ ।୨।
କେ ବୋଲଇ ସହି ଏହି ପଥେ ନେସହି
ମୋହନ ସୁନ୍ଦର ଗଲେ ଗୋ

କରେ କର ଛନ୍ଦ  ଭୁଜ ବନ୍ଧାବନ୍ଧ
ସୀତାରାମ ହୋଇଥିଲେ ଗୋ
ଗୁଳ ପଦ ଅନୁସର
ନଷ୍ଟେ ଭେଟିବା ସେ ଗୃପଧାରୀ ଗୋ ।୩।
ତହୁଁ କାନ୍ତୁ ଦୂର  ହୋଇ ଅଗ୍ରସର
ଶୁଣିଲେ ବିଳାପ ବାଣୀ ହେ
ତରଳାବ ଗିର  ସର୍ବ ରସାତୁରୀ
ଏକକୁ ଅନେକ ଭଣି ହେ
ରଜନୀରେ ଏ କ ଶୋକ
କେହୁ ବୋଲେ ଗୂଳ ଗୂଳ ଦେଖ ଗୋ ।୪।

ଶ୍ଳୋକଃ

**ସହସା ଯୋଷିତଃ ସୀତା ମଦୂରେ ତବ କାନନେ**
**ଦୃଷ୍ଟ୍ୱାତି ବିକଳାଂ ଦେବୀଂ ପୃଚ୍ଛନ୍ତି ତସ୍ୟ କାରଣଂ ।୩୪**

ପୟାର

ଯୋଷାଗଣ ଯେ ନୟନ ପକାନ୍ତେ ଅଦୂରେ
ଦେଖିଲେ ତ ସୀତା ସ୍ଥିତ ଶୋକେ ଏକାକୀରେ ହେ ।୧।
କେ ବୋଲଇ ପ୍ରାଣସହେ ହା ହା ସୁକୁମାର ।
କେ ବୋଲଇ ବଇଦେହୀ କଥାଁ ହତଶିରୀ ଗୋ ।୨।
ମନମାୟା ବୋଲେ ମାୟାଧର କେଣେ ଗଲେ
ସେ ତ କାୟା ତୁମ୍ଭେ ଛାୟା କପଁା ଏହା କଲେ ଗୋ ।୩।
ପଦ୍ମମଳା ବୋଲେ ଲୀଳା ଦେଖ ସଜନିକ
ଅସ୍ତ୍ରବ୍ୟସ୍ତ ପ୍ରାଣମିତ କବରୀ ବ୍ରଜକ ଗୋ ।୪।

କେ ବୋଲଇ ଅଧର ହିଁ ହୋଇଅଛୁ କ୍ଷତ
କେବା କହେ ଦେଖ ଅଛେ ରକତ ବ୍ୟକତ ଗୋ ।୫।
ଇତସ୍ତତ ହୋଇଛନ୍ତି ତ ଅଙ୍ଗ ଅଳଙ୍କାର
ପାଶେ ବସି କେ ଆଶ୍ୱାସି ବୋଲେ ଧୈର୍ଯ୍ୟଧର ଗୋ ।୬।
ଶୋକେ ଗୁରୁ ସେ ରମ୍ଭୋରୁ ଗଣେ ସୀତା ପାଶ
ଆହା ସଖି ତୁ ନିର୍ମାଖି ! ବୋଲି ବନ୍ଧ ଭାଷ ଗୋ ।୭।
ଏକା ସ୍ୱିତ ରଘୁପତି କେଉଁ ଦୋଷେ କର
ନାରୀକୁଳେ ତେଜି ହେଲେ ତୋ ଗରବ ସାର ଗୋ ।୮।
ମନମାୟା ବୋଲେ ବାମ୍ୟା ହେଲ କା ସଙ୍ଗାତ
ଧୈର୍ଯ୍ୟ ଧର ସେ ନାଗର ବର ରଘୁସୁତ ଗୋ ।୯।
ମନ ଜାଣି ଏହିକ୍ଷଣି ଆସିବେ ଗୋ ପାଶ
ସୁସ୍ଥ ହୁଅ ରଘୁରାୟ ଖୋଜି ଯିବା ଆସ ଗୋ ।୧୧।
ବାଳୀଗଣେ ଏ ବଚନେ ଦେନିଲେ ସାନ୍ତ୍ୱନା
ଛଣ୍ଡୁ ଭ୍ରଟେ ବନଦେଶେ ଭ୍ରମନ୍ତି ସୁମନା ।୧୨।

ଶ୍ଲୋକଃ

**ଅଭିମାନବତୀ ତଦା ସତୀ ଦଧତୀ ଗ୍ରଶ୍ରୁ ପରିପ୍ଲୁତେକ୍ଷଣେ**
**ନ ନବା ସ୍ମରତେତି ରାଘବଂ କଥୟାମାସ ସଖୀଗଣଂ ବହୁ ।**

ପୟାର

ଗୁରୁଶୀଳା ସେହି ଲୀଳା ଅରୁଣ ନୟନେ
ରୋଷେ ଦେଇ ତର୍ଜ୍ଜନୀକି କହେ ସଖୀଗଣେ ଗୋ ।୧।
ନେତ୍ରୁ ନୀର ଧାର ଧାର ବହେ ଅଭିମାନେ
କେଉଁ ମୁଖେ କହ ସୁଖେ ଅଛ ସଖିମାନେ ଗୋ ।୨।

ଅମ୍ଭ ଗର୍ବ କର ଖର୍ବ ଅସି ଋପ ଯୁକ୍ତ
ଯେଉଁ ଦଶା ଲୋକହସା କରିଲେ କୃପାକ୍ତ ଗୋ ।୩।
ସଖି ପାଇ ଅଗୋ ସହ୍ର ଭୁଲିବାର ତାହା
ସୀତା ଦୁଃଖ ପୁଣି ଶୋକ କଲା ହୃଦ ଦାହା ଗୋ ।୪।
ଧିକ ଶଠ ସେ ଲମ୍ପଟ ଧିକ ମାୟାଧର
ଡାକି ଅଣି ବନେ ପୁଣି କଲେ ଏ ବେଭାର ଗୋ ।୫।
କି ସାହସେ ତାଙ୍କୁ ପାଶେ ଡାକିବା ସଜନ !
ତା ଅନ୍ତରେ ପଛେ ଅମ୍ଭେ ମରିବା ରଜନ ଗୋ ।୬।
ଜୀବ ଯାଉ ତା ନହେଉ କୁଳେ ଲାଗୁ କାଳି
ବୋଲେ ନୀଳ ନେଉଁରାଳ ମରିବା ମୁଁ ଭଲି ଗୋ ।୭।

## ସୀତୋବାଚ

ଶ୍ଳୋକଃ

**ସୁଖଂ ବା ଯଦି ବା ଦୁଃଖଂ ସ୍ୱକର୍ମ ବଶଗୋ ନରଃ**
**ଯଦ୍ ଯଦ୍ ଯଥାଗତଂ ତତ୍ତଦ୍ ଭୁକ୍ତ୍ୱା ସୁସ୍ଥମନା ଭବେତ୍ ।୩୬**

### ପୟାର

କହେ ହସି କାଶହାସୀ ଜନକ ଦୁଲଣୀ
ଅଗୋ ସଖି ! ନଜାଣ କି ବଚନ ଧରଣୀ ଗୋ ।୧।
ହେଉ ସୁଖ ଅବା ଦୁଃଖ କର୍ମବଶେ ନର
ଭୋଗେ ତାହା ଗୋ ସୁଦେହା କର୍ପା ନବଗୃର ଗୋ ।୨।
ପୂର୍ବକର୍ମ ଦୋଷେ ରାମ ହୋଇଛନ୍ତି ଛଳ
ପ୍ରଭୁ ପାଶେ ଅନ୍ୟାୟେ ଦୋଷ ଦେଉଛ ତ ଗୋ ।୩।
ଅମ୍ଭ ଭାଗ୍ୟକୁ ଏ ଯୋଗ ନହେଲ କପାଇଁ
ସନେ ସୁଖ ପୁଣି ଦୁଃଖ ଭୋଗିବା ତୋ ସହ୍ର ଗୋ ।୪।

ଅମ୍ଭେ ହୀନ ନାରୀଜନ୍ମ ପ୍ରଭୁ କୃପାକର
ହେଲ୍ଲ ଭାବ ଲଭି ଗର୍ବ ହୃତ କା ଅମ୍ଭର ଗୋ ।୫।
ତେଣୁ ସିନା ସେହି ଖାଣାଧର ଅନ୍ତର୍ଦ୍ଧାନ
ତାଙ୍କ ପ୍ରେମ ସୂର୍ଯ୍ୟସୋମ ତେଜ କରେ ଆନ ଗୋ ।୬।
କୃପାକର ରଘୁବୀର ନୁହନ୍ତି ଏପର
ଗୃଲ ବନେ ମୋଦମନେ ଯିବା ସତ୍ୱରେ ଗୋ ।୭।
ନିରଞ୍ଜନ ସନାତନ ନିଷ୍କଳଙ୍କ ସେହି
ବୋଲେ ନୀଲ ରଘୁବାଳ ଗୁଣାତ୍ମନ ଦେହୀ ଗୋ ।୮।

ଶ୍ଳୋକଃ

**ସୀତୟା ବଚନଂ ଶ୍ରୁତ୍ୱା ସର୍ବାହର୍ଷପରିପ୍ଲୁତାଃ**
**ପ୍ରୟାନ୍ତି କାନନଂ ନାର୍ଯ୍ୟଃ ରାମାନ୍ୱେଷଣତତ୍ପରାଃ ।୩୭**

ପୟାର

ସୀତାଙ୍କର ନୀତସାର ବଚନ ପ୍ରମାଣେ
ହରଷିତ ନାରୀଯୂଥ ଚଳନ୍ତି କାନନେ ହେ ।୧।
ରାମ ଭାବେ ମୋଦ ସର୍ବେ କୁଞ୍ଜେ କୁଞ୍ଜେ ଫେର
କାହିଁ ସ୍ଥିତ ରଘୁନାଥ ନପାରିଲେ ବାରି ହେ ।୨।
ଅବଶେଷରେ ନିରାଶ ଭାବ ବହି ମନେ
ସମାଗତ ନାରୀଯୂଥ ସରଯୂ ପୁଳିନେ ହେ ।୩।
ସେ ବିରହ ଭାବ ଚଯ଼ି ମନେ ମନେ ଭାବି
ଦାସ୍ୟ ଭାବେ ନୀଳ ଏବେ ବୋଲଉଛନ୍ତି କବି ହେ ।୪।
ଦୟାକର ହେ କିଶୋର ଶ୍ରୀରଘୁନନ୍ଦନ
ତୋଷେ ଆସ କର ରାସ ହରି ନାରୀ ମନ ହେ ।୫।

ଶ୍ଳୋକଃ

**ପୌଷେମାସ୍ୟ ସିତେପକ୍ଷେ ଭୌମେବାସର ନାୟକେ**
**ଦ୍ୱିତୀୟଶ୍ଚାୟମୁଲ୍ଲାସୋ ନବମ୍ୟାଂ ବିଗତଃ ଗଳୁ ।**

ପୟାର

ହେଲା ଶେଷ ଏ ଉଲ୍ଲାସ ରାମ ଦୟାବଳେ
ମାସ ପୌଷ ହେ ବନ୍ଧୁଷ କୃଷ୍ଣପକ୍ଷ ହେଲେ ହେ ।୧।
ଭୌମବାର ତଥି ତାର ସୁଧାମୟ ବେଳା
ଏକାକୀ ତ ହୋଇ ସ୍ଥିତ ଚନ୍ଦ୍ର ରଘୁବଳା ହେ ।୨।
ନଭପର ଧବାକର ହୋଇ ନାହିଁ ଅସ୍ତ
ଏହିକାଳେ ପ୍ରଭୁ ହେଲେ କଲେ ଏହା ଅନ୍ତ ହେ ।୩।
ଶ୍ଳୋକ ସଂଖ୍ୟା କରୁ ଏକା ସତଚିଶ ଗଣା
ପରିକୃତ ତିନି ଶତ ସତ୍ତୁରିଶ ଜଣା ହେ ।୪।
ଅହେ ସାଧୁ ନିଷ୍କଳଙ୍କ ଜ୍ଞାନମୟ ଜନେ
ମୁଁ ଶରଣ ନିଶିଦିନ ତୁମ୍ଭ ଶ୍ରୀଚରଣେ ହେ ।୫।
କବିବର ପୀତାମ୍ବର ଜୟଦେବଙ୍କର
ପଦ ତଳେ ଅନ୍ତରଳେ ହୋଇଛୁ କିଙ୍କର ହେ ।୬।
ହୀନମତ ବୁଦ୍ଧିବୃତ୍ତ ନାହିଁ ମୋର କିଛି
ପ୍ରଭୁଦୟା ଲାଗି ଯାହା ସାହସ କରିଛୁ ହେ ।୭।
କୃପାମୟୀ ସେ ବୈଦେହୀ ରଘୁକୁଳ ପତି
ପଦେ ସେବା ନିଶିଦିବା ଧ୍ୟାନ ସେହି ମୂର୍ତ୍ତି ହେ ।୮।
ପିତାମାତା ଆଉ ଚିନ୍ତା ମୋର ଅଉ କିସ
ମକରନ୍ଦ ପାନେ ଅନ୍ଧ ନୀଳକଣ୍ଠ ଦାସ ହେ ।୯।

ଇତି ଶ୍ରୀ ହରଗୌରୀ ସଂବାଦେ ଶ୍ରୀରାମ ବାସନ୍ତିକ ରସୋତ୍ସବ ବର୍ଣ୍ଣନେ
ବିନୋଦ ବୈଭବୋ ନାମ ଦ୍ୱିତୀୟୋଽଲ୍ଲାସଃ ।୦।

# ତୃତୀୟ ଉଲ୍ଲାସ

ଶ୍ଳୋକଃ

**ତୃତୀୟେ ସକଳା ନାର୍ଯ୍ୟଃ ପୁନଃ ପୁଲିନ ମାଗତାଃ**
**ସ୍ତୁବନ୍ତି ରାମ ରାମେତି ବିରହାତୁରମାନସଃ ।୧**

ପୟାର

ସାଧୁଜନେ ମୋଦ ମନେ ଶୁଣ ଏ ଉଲ୍ଲାସ
ବିରହରେ ନାରୀ ବାରେ ଦୁଃଖିତ ମାନସ ହେ ।୧।
ପୁଲିନକୁ ସେ ମନକୁ ଆସି ରସାତୁରୀ
ଆଚରନ୍ତି ବହୁ ସ୍ତୁତି ରମେ ଅବଧାରି ହେ ।୨।
ଏହି କଥା ରସଗାଥା ହୋଇବ ବର୍ଣ୍ଣିତ
ବୋଲେ ନୀଳ ରଘୁବୀର ଚରଣ-ଆଶ୍ରିତ ହେ ।୩।

ଶ୍ଳୋକଃ

**ଅଗଣିତଗୁଣମପ୍ରମେୟମାଦ୍ୟଂ**
**ସକଳଜଗତ୍ସ୍ଥିତିସଂଯମାଦି ହେତୁଂ**
**ଉପରମପରମଂ ପରାତ୍ମଭୂତଂ**
**ସତତମହଂ ପ୍ରଣତୋସ୍ମି ରାମଚନ୍ଦ୍ରମ୍ ।୨**

ତଥା

ଗୁଣ ଅଗଣିତ ଅନାଦ୍ୟ ଅନନ୍ତ
ଅପ୍ରମେୟ ଅବତାର ହେ
ସକଳ ଜଗତ ସୃଷ୍ଟି ସ୍ଥିତ ତତ୍ତ୍ୱ
ଲୟେ ତୁମ୍ଭ ଅଧିକାର ହେ
ଜୟ ନବ୍ୟମୂର୍ତ୍ତିଧାରୀ
ବ୍ରହ୍ମା ବିଷ୍ଣୁ ପୁଣି ତ୍ରିପୁରାରି ହେ ।୧।

ଶାନ୍ତ ଗୁଣମୟ ଅହେ ରଘୁରାୟ
ପରମାତ୍ମା ଅସ୍ମଭୂତ ହେ
ସଦା ଦବାନଳି ପଦତଳ ଦାସୀ
ଦଶା ଦେଖ ରଘୁନାଥ ହେ
ଜୟ ଜୟ ରସରାଜ
ପ୍ରେମାନନ୍ଦ ମୂର୍ତ୍ତି ଅସ ଅଜ ହେ ।୨।

ଶ୍ଳୋକଃ

**ନିରବଧିସୁଖ ମିନ୍ଦିରାସନାଥଂ**
**ଶମିତସୁରେନ୍ଦ୍ରଚତୁର୍ମୁଖାଦିଦୁଃଖଂ**
**ବରଦମହଂ ବରଚାପବାଣହସ୍ତଂ**
**ନରବର ମନିଶଂ ନମାମି ରାମମ୍ ।୩**

ଯଥାରାଗ

ନିରବଧି ଜନେ ଭଜ ଯାକୁ ମନେ
ଲଭନ୍ତି ଅପାର ସୁଖ ହେ
ବରୁଣ ନନ୍ଦନା କରୁଣ ନୟନା
କଟାକ୍ଷେ ପାସୋର ଦୁଃଖ ହେ
ଯାର ପଦତଳ ଦାସୀ
ସରସ୍ୱତୀ ବୀଣା ବାଏ ବସି ହେ ।୧।
ସୁନାଶିର ଚୁନା କରେ ଭଜ କନା
ଆପଣାର ଦୁଃଖ ଭାବ ହେ
ବେଦେ ସ୍ତବ କର ଚତୁର୍ମୁଖଧାରୀ
ଆନନ୍ଦ ଲଭେ ଅପାର ହେ
ଅହେ ଶରଣବତ୍ସଳ
ଦାସୀଗଣେ ଶ୍ରୀଚରଣତଳ ହେ ।୨।

ଦୀନ ଜନ ବନ୍ଧୁ ଅହେ କୃପାସିନ୍ଧୁ
ମାନ ଉଦ୍ଧାରଣ ହର ହେ
ପରନାଣ କର ଦାସୀ ଚରଣର
ଶରଣାର୍ତ୍ତି ଦୁଃଖ ହାର ! ହେ
ସାର୍‌ଦଅ ନାହିଁ ଅତ୍ର
ଧାର ହେଉଅଛୁଁ ମହାବାହୁ ହେ ।୩।
ହେ ରସିକ ରାଜ ଆସ ଆସ ଆଜ
ବାଣଧର ବାଣକାର ! ହେ
ଅଭସ୍ମ ବରଦ ଜାତ କର ମୋଦ
ଅମ୍ଭେ ପଦ ପରଗୃହୀ ହେ
ସାରଦଅ ନାହିଁ ଅତ୍ର
ଧାର ହେଉଅଛୁଁ ମହାବାହୁ ହେ ।୪।

ଶ୍ଳୋକଃ

**ନୈଭ୍ରବନକମନୀୟ୍ରୂପମୀଡ୍ୟଂ**
**ରବିଶତଭାସ୍ୱରମୀହିତପ୍ରଦାନଂ**
**ଶରଣ ରକ୍ଷକଂ ସ୍ୱରାଗମୂଲେ**
**କୃତନିଳୟଂ ରଘୁନନ୍ଦନଂ ପ୍ରପଦ୍ୟେ ।୪**

ପୟାର

ତନାପୁର ମଧ୍ୟେ ସାର ସୁନ୍ଦର ହେ ହର
ସନାତନ ସ୍ତୁତଗାନ ସର୍ବେ ତୋତେ କର ହେ ।୧।
ଶତସୂର୍ଯ୍ୟ ହୀନ ତେଜ ତୋ ପ୍ରଭାରେ ହୁଏ
ତୋ ଅଲୋକେ ଏ ତ୍ରିଲୋକେ ଉଜ୍ଜ୍ୱଳ କରାଏ ହେ ।୨।
ଭକ୍ତଗଣ ହୃଦେ ସ୍ଥାନ ଲଭି ରଘୁନାଥ
ପୂର୍ଣ୍ଣ ପ୍ରେମ କର କାମ ସିଦ୍ଧି ହେ ଅଚ୍ୟୁତ ହେ ।୩।

ସେହି ସ୍ତୁତି ପାଠ ପଢ଼ି ଭୂପେ ପୂଜା କରି
ଯୋଡ଼କରେ ଅମ୍ଭେମାନେ ଅନାଥିନୀ ପରି ହେ ।୪।
ଅହେ ବନ୍ଧୁ ସୁତ ଲଘୁ କର ଦୁଃଖ ଭାର
ନିରନ୍ତର ଭଜେ ନୀଳ ତୋତେ ଗୁଂପଧର ହେ ।୫।

ଶ୍ଳୋକଃ

**ଭବବିପିନଦାବାଗ୍ନି ନାମଧେୟଂ**
**ଭବମୁଖଦେବବନ୍ଦ୍ୟଦୈବତଂ ଦୟାଳୁମ୍**
**ଦନୁଜପତି ସହସ୍ର କୋଟି ନାଶଂ**
**ରବିତନୟା ସଦୃଶଂ ହରିଂ ପ୍ରପଦ୍ୟେ ।୬।**

ପୟାର

ଭବ ବନେ ପୂରେ ଘନେ ବିଷୟାଦି ପରି
ତରୁଲତା ଫଳଯୁତା ଅଶାମାୟା ବାରି ହେ ।୧।
ସେ ବନିର ଦନାଶନ ଅଟେ ତୁମ୍ଭ ନାମ
ଦାବାନଳ ଦୂର୍ବାନ ସର୍ବଗୁଣଧାମ ହେ ।୨।
ଯାକୁ ନିତ୍ୟ ଦିବାରାତ୍ର ଭଜେ ତ୍ରିପୁରାରି
ଦେବଗଣେ ମୋଦମନେ ସ୍ତୁତିଗାନ କରି ହେ ।୩।
କୃପାମୟ ଦୟାମୟ ତୋର ଅବତାର
ଶିଷ୍ଟ ତୋଷି ଦୁଷ୍ଟ ନାଶି ରଖୁ ମହୀଭାର ହେ ।୪।
କି ସୁଢ଼ଳ ତୋର ନୀଳ କାନ୍ତି କରେ ହୀନ
ଅହେ ନାଥ ସୂର୍ଯ୍ୟଜାତ ଯମୁନାର ବନ ହେ ।୫।
ପ୍ରଭେ ନୀଳ ଦେହ ଝିଲ ଧରାନ୍ଧତକାରୀ
ଅସ ଅସ ପାଶେ ବସ ନୀଳ ଅବଧାରି ହେ ।୬।

ଶ୍ଳୋକଃ

**ଅବିରତଭବଭାବନାତିଦୂରଂ**
**ଭବବିମୁଖୈର୍ମୁନିଭିଃ ସଦୈବ ଦୃଶ୍ୟମ୍**
**ଭବଜଲଧିସୁତାରଣାଙ୍ଘ୍ରିପୋତଂ**
**ଶରଣମହଂ ରଘୁନନ୍ଦନଂ ପ୍ରପଦ୍ୟେ ।୬**

ପୟାର

ତୁମ୍ଭ ମୂର୍ତ୍ତି ସଦା ନିତ୍ୟ କରନ୍ତି ଦର୍ଶନ
ଭବ ଦୁଃଖରେ ବିମୁଖ ଯେତେ ମୁନିଗଣ ହେ ।୧।
ଏ ସଂସାର ପାରାବାର ତାରଣ ନିମିତ୍ତ
ଅଟେ ରାମ ତୋ ପରମ ପଦ ସିନା ପୋତ ହେ ।୨।
ସଦା ସେହି ପଦେ ଏହି ଦାସୀଗଣ ତୋର
ଅନୁଗତା ଅଟେ ସୀତାକାନ୍ତ ରକ୍ଷାକର ହେ ।୩।

ଶ୍ଳୋକଃ

**ଗିରୀଶଗିରିସୁତାମନୋନିବାସଂ**
**ଗିରିବରଧାରିଣ ମିହୀତାଭିରାମମ୍**
**ସୁରବରଦନୁଜେନ୍ଦ୍ର ସେବିତାଙ୍ଘ୍ରିଂ**
**ସୁର ବରଦଂ ରଘୁନାୟକଂ ପ୍ରପଦ୍ୟେ ।୬**

ପୟାର

ତ୍ରିପୁରାରି ପୁଣି ଗିରିସୁତା ଦୁହିଙ୍କର
ମନ-ଗୃହେ ଅନୁଗ୍ରହେ ତୁମ୍ଭେ ବାସକର ହେ ।୧।
ସୁନାଶିର ନିରନ୍ତର ଅସୁର ସକଳ
ଭକ୍ତିଭରେ ଶ୍ରୀପଦରେ ପୂଜନ୍ତି କେବଳ ହେ ।୨।

ଭେଦ ଭାବ ହେ ମାଧବ ରହିତ ତୋଠାରେ
ସୁରଗଣେ ବରଦାନେ ତୋଷୁ ଅନାଦରେ ହେ ।୩।
ଗିରିଧର ଅମ୍ଭେ ତୋର ଶ୍ରୀଚରଣ ଦାସୀ
ଆସ ଆସ ପାଶେ ବସ ନୀଳକଣ୍ଠ ଭଣି ହେ ।୪।

ଶ୍ଳୋକଃ

**ପରଧନପରଦାରବର୍ଜିତାନାଂ**
**ପରଗୁଣଭୂତିଷୁ ତୁଷ୍ଟମାନସାନାମ୍**
**ପରହିତନିରତାତ୍ମନାଂ ସୁସେବ୍ୟଂ**
**ରଘୁବରମମ୍ବୁଜଲୋଚନଂ ପ୍ରପଦ୍ୟେ ।୮**

ଦୀର୍ଘ

ଅହେ ନାଥ କୃପାକର ପରଧନ ପରଦାର
ବିବର୍ଜିତ ତୁମ୍ଭର ମାନସ
ସଦା ପରହିତ ରତ ପରମ ମଙ୍ଗଳ ଯୁତ
ପରବିଭୂତିରେ ପୁଣି ତୋଷ ହେ
ନାଥ ହେ
ପରମ ପୁରୁଷ ଅଦ୍ଭୁତ
ଅମ୍ବୁଜ-ଲୋଚନ ରଘୁସୁତ ହେ ।୧।
ସଦା ପର ଉପକାର ଲାଗି ତୁମ୍ଭ ଅବତାର
ପରେ ଅପକାର ଥାଉ କର
ଅମ୍ଭେ ତ ସନ୍ଧକେ ଦାସୀ ଶ୍ରୀପଦ ତଳକୁ ଆସି
ବିନାଶ ହେବୁ କି ଆଶା ଧର ହେ
ନାଥ ହେ
ପରମ ପୁରୁଷ ଅଦ୍ଭୁତ
ଅମ୍ବୁଜ-ଲୋଚନ ରଘୁସୁତ ହେ ।୨।

ଶ୍ଳୋକଃ

ସ୍ମିତରୁଚିରବିକଶିତାନନାବ୍ଜଂ
ମୁନିସୁଲଭଂ ସୁରରାଜନୀଲନୀଲମ୍
ସିତଜଲରୁହଚାରୁନେତ୍ରଶୋଭଂ
ରଘୁପତିଂ ସୁରଗଣଗୁରୁଂ ପ୍ରପଦ୍ୟେ ।୯

ଦୀର୍ଘ

ଦରହସିତ ଅଧର କି ସେ ବିକଚ-କମଳ
ଅତି ମନୋହର ମୁଖଠାଣି
ସିତ କଞ୍ଜ ଜିଣି ନେତ୍ର ଇନ୍ଦ୍ରନୀଳ ସମ ଗାତ୍ର
ଭକତ-ସୁଲଭ ରଘୁମଣି ହେ
ନାଥ ହେ
ଶିବ ବ୍ରହ୍ମା ଗୁରୁଙ୍କର ଗୁରୁ
ଭକ୍ତ ଚିନ୍ତାମଣି କଳ୍ପତରୁ ହେ ।୧।

କଟିରେ ଶୋଭେ ଦୁକୂଳ ବିଦଳିତ-ହରିତାଳ
ନୀଳ ଘନେ ବିଦ୍ୟୁ ସମ ତୋର
ପରମ-ଆନନ୍ଦ-ଭୋଗୀ ଭକ୍ତ-ଜନ-ଅନୁରାଗୀ
ଜଡାବୁଛି ହାତେ ପଦେ ପଡ଼ି ହେ
ନାଥ ହେ
ଶିବ ବ୍ରହ୍ମା ଗୁରୁଙ୍କର ଗୁରୁ
ଯାହା ବର ପ୍ରଭୁ କଳ୍ପତରୁ ହେ ।୨।

ଶ୍ଳୋକଃ

**ହରିକମଳଜଶମ୍ଭୁରୂପ ଭେଦାତ୍**
**ତ୍ୱମିହ ବିଭାସି ଗୁଣତ୍ରୟାନୁବୃତ୍ତଃ**
**ରବିରିବ ଜଲପୂରିତୋଦପାତ୍ରେ**
**ଅମରପତିସ୍ତୁତିପାତ୍ରମୀଶମୀଡେ ।୧୦**

ଦୀର୍ଘ

ବାଜିକର ପ୍ରତିରୂପ ଜଳପାତ୍ରରେ ଯେ ରୂପ
ନାନାବିଧ ମୂର୍ତ୍ତି ଧରି ଖେଳେ
ସେପରି ହେ ଦାମୋଦର ତ୍ରିଗୁଣେ ତ୍ରିମୂର୍ତ୍ତି ଧର
ଖେଳା ଲୀଳା ବିସ୍ତାର ଶଯ୍ୟାରେ ହେ
ନାଥ ହେ
ତୁମ୍ଭେ ହରି ତୁମ୍ଭେ ବ୍ରହ୍ମା ଶିବ
ଅମରଙ୍କ ଭୂପତି ବାସବ ହେ ।୧।

ଦିବାନିଶି ଜପି ଜପି କେତେ ମହାତପୀ ତାପୀ
ତଥାପି ହେ ଅନନ୍ତ ମୂରତି
ନପାଇଲେ ତୁମ୍ଭ ମୂଳ ମାୟାଧର ଦାସୀକୁଳ
ପୂର୍ବ ତପେ ବରଅଛୁଁ ପତି ହେ
ନାଥ ହେ
କୃପା ହେଉ କରୁଣା-ଜଳଧି
ନୀଳକଣ୍ଠ ସେବା ନିରବଧି ହେ ।୨।

ଶ୍ଳୋକଃ

**ରତିପତିଶତକୋଟିସୁନ୍ଦରାଙ୍ଗଂ**
**ଶତପଥଗୋଚର ଭାବନାବିଦୂରମ୍**
**ଯତିପତି ହୃଦୟେ ସଦା ବିଭାତଂ**
**ରଘୁପତିମାର୍ତ୍ତିହରଂ ପ୍ରଭୁଂ ପ୍ରପଦ୍ୟେ ।୧୧**

ଯଥା ରାଗ

ହୋଇଲେ ଏକତ୍ର ଶତ କୋଟି କାନ୍ତ
ରତି ପତି ଏକା ହେଲେ ହେ
ତୁମ୍ଭ ରୂପ ରାଶି ସଙ୍ଗତରେ ମିଶି
ସମାନ ହେବେ କା ଛଳେ ହେ
ଅହେ ମଦନ ମୂନ୍ଦର
କେଣେ କରୁଛ ଅଉ ହୁନ୍ଦର ହେ ।୧।
ନାନା ପଥ-ଗାମୀ ମନୁଷ୍ୟର ସ୍ୱାମି !
ତୁମ୍ଭେ ତ ଭାବନା ଦୂରେ ହେ
ନାରଦେ ନିବାସ କର ହୃଷୀକେଶ
ମୁନିଜନ ହୃଦୟରେ ହେ
ଶରଣାର୍ଥୀ ଆର୍ତ୍ତିହର
ଜୟ ଜୟ ରଘୁକୁଳ ବର ହେ ।୨।

## ଚତୁଷ୍ପଦୀ

ଅହେ ରଘୁସୁତ ତବ କଥାମୃତ
ସ୍ୱର୍ଗ ଅମୃତରୁ ବଳିଗଲା;
ଶ୍ୟାମଳ ସୁନ୍ଦର କଳେବ ହୁନ୍ଦର
କହ ଏହା କାହା ମନେ ଥିଲା ।୦।
କରୁଣା କଳପ-ପାଦପ-ଉପର
ବିଷମୟ ଫଳ ଏ ଭାଗ୍ୟ ଆମ୍ଭର
କଳ୍ପତରୁ ମୂଳେ ବସି କୁତୂହଳେ
ଉପବାସେ ଆମ୍ଭ ଦିନ ଗଲା ।୧।

ରସମୟ ସିନ୍ଧୁ ହୃଦୟ ଦେବତା
ରଘୁକୁଳ ଶଶି ! ହେ ଭାଗ୍ୟ ବିଧାତା
ରାମ ମନୋରମ　　　　　　　　ମୂରତି ପରମ
କଦାରୁଣି ହେବା ଜଣାଗଲା ।୨।
କୁଳବତୀ ମାନ-ସିନ୍ଧୁ-କୁମ୍ଭସୁତ
ବିରହ ବ୍ୟାଧିଟି ହେଲାଣି କୃତାନ୍ତ
ଅଧର ଅମୃତ　　　　　　　　ପାନ ଦିଅ ନାଥ
ଧନ୍ୱନ୍ତରୀ ଥାଉ ଏହା ହେଲା ।୩।
କଞ୍ଜ ନୟନ ଏ ଖଞ୍ଜନ-ଗଞ୍ଜନ-
ଈକ୍ଷଣାଏ ତୁମ୍ଭ ଦାସୀ ପରିଜନ
ଭାସି ଯାଉଛନ୍ତି　　　　　　　　ଆସି ରଘୁପତି
ନୀଳ ଭାବେ ଦିଅ ପ୍ରାଣ ଭଲା ।୪।

ଶ୍ଳୋକଃ

**ତ୍ୱତ୍ପାଦପଦ୍ମାର୍ପିତଚିତ୍ତବୃତ୍ତି**
**ସ୍ତ୍ୱନ୍ନାମସଙ୍ଗୀତକଥା ରତୋଽହମ୍**
**ତ୍ୱଦ୍ଭକ୍ତିସେବାନିରତୌ କରୌ ମେ**
**ତ୍ୱଦଙ୍ଗସଙ୍ଗଂ ଲଭତାଂ ମମାଙ୍ଗ ।୧୬**

ପୟାର

ଚିତ୍ତବୃତ୍ତି ରଘୁପତି ପାଦପଦ୍ମେ କତ
କରୁ ଦାନ ତେଜି ଆନ ବିଷୟ ପ୍ରବୃତ୍ତ ହେ ।୧।
ତୁମ୍ଭ ରସ ସଦା ତୋଷ ହୋଇ କରୁ ଗାନ
କୀର୍ତ୍ତି ବଦନେ ଏ ରସନେ ଆହେ ପ୍ରାଣଧନ ହେ ।୨।

କି ବିପଦ କି ସଂପଦ ମୋହେ ସଦାକାଳେ
କର ଦୁଇ ଲାଗି ଥାଉ ପ୍ରେମେ କୁତୂହଳେ ହେ ।୩।
ତୁମ୍ଭ ଭକ୍ତ ଅନୁରକ୍ତ ଜନଙ୍କ ସେବାରେ
ତାର ଫଳ ଏକ କାଳ ଦାସୀ ଜନଠାରେ ହେ ।୪।
ଅହେ ଦେବ ହେ ବରଦ ହେ ପରମେଶ୍ୱର
ତୁମ୍ଭ ଅଙ୍ଗ ଦିବ୍ୟସଙ୍ଗ ଦିଅ ନିରନ୍ତର ହେ ।୫।
ଏହି ଭିକ୍ଷା ପଦେ ଏକା କରୁ ଦାସୀଗଣ
ହୀନ ମାଳ ରଘୁବାଳ ଶ୍ରୀପଦ-ଶରଣ ହେ ।୬।

ଶ୍ଳୋକଃ

**ତ୍ୱନ୍ମୂର୍ତ୍ତିକାନ୍ତିଂ ନୟନାନି ଦୃଷ୍ଟ୍ୱା**
**ଗଚ୍ଛନ୍ତ୍ୟଜସ୍ରଂ ସ୍ପୃଶଦ୍ଭିନ୍ନ ମଧ୍ୟମ୍**
**ତତ୍‌କାନ୍ତଗାଥାଶ୍ରବଣେଚ କର୍ଣ୍ଣୈଃ**
**ତୃପ୍ତିଂ ବ୍ରଜେନ୍ନୈବ ନ ପରଂ ଶୃଣୋତି ।୧୩**

ଯଥା ରାଗ

ଅମ୍ଭର ନୟନ ହେ ରଘୁନନ୍ଦନ
ନିତ ଆନନ୍ଦିତ ମନେ ହେ
ତୁମ୍ଭର ସ୍ୱରୂପ ଦରଶନେ ତୃପ୍ତ
ପୁଣି ତୁମ୍ଭ ଭକ୍ତଗଣେ ହେ
ତୁମ୍ଭେ ଗୁରୁଙ୍କର ଗୁରୁ
ରସରାଜ କାମ କଳ୍ପତରୁ ହେ ।୧।
ଶ୍ରବଣ ଯୁଗଳ ଅହେ ରଘୁବାଳ
ତୁମ୍ଭ ରସ କଥା ବନେ ହେ

କେବେ ଅବା କାହିଁ      ମନେ ହୁଏ ନାହିଁ
ଶୁଣି ରହିବାକୁ ଅନେ ହେ
କୁଳବତୀ କୁଳ ଚୂଡ଼ା
ମୃଦୁ ହାସେ ଯେ ଭଙ୍ଗିମ ଛୁଡ଼ା ହେ ।୨।

ତୁମ୍ଭ ଜନ୍ମକର୍ମ      ଶୁଣି ଅବିରାମ
ଚିତ୍ତେ ଲଭୁଥାଉ ମୋଦ ହେ
ଦୟା ପାରାବାର      ମାୟାରେ ଅପାର
ଅମ୍ଭଙ୍କ ଦେଲ ବିପଦ ହେ
କେଉଁ ଶାସ୍ତ୍ରେ ଏହି ବାଣୀ
ଦାସୀ ନାଶିବାର ରଘୁମଣି ହେ ।୩।

ଏ ପଦ ଯୁଗଳ      ସ୍ତବେ ଅବିରଳ
ରହିବାକୁ ତୁମ୍ଭ ପୁର ହେ
ମନ ଜାଣି ଫଳ      ଦିଅ ଆଦିମୂଳ
ଏବେ କରିଅଛ ଦୂର ହେ
ମନ୍ଦେ ହସି ଆସ ଆସ
ନୀଳକଣ୍ଠ ଶ୍ରୀଚରଣ ଦାସ ହେ ।୪।

ଶ୍ଳୋକଃ

**ସ୍ତୁତୈଃ ସ୍ତୁବନ୍ତଂ ତବ ପାଦ-କଞ୍ଜଂ**
**ସମର୍ଚ୍ଚିତୁଂ ନାଥ ! ବୟଂ ତଦୋତ୍କାଃ**
**ତଦ୍ଦର୍ଶୟିତ୍ୱା ତବରୂପ ମୀଶ !**
**ଦାସୀଷୁ ଗୃହ୍ୟାସୁ ଦୟାପରଃ ସ୍ୟାଃ ।୧୫**

ଯଥାରାଗ

ତୁମ୍ଭ ପଦ ଧୂଳି ଅଙ୍ଗେ ହୋଇ ବୋଳି
ନାଚିବାକୁ ପ୍ରେମ ଭରେ ହେ
ବ୍ରହ୍ମା ଶିବାର୍ଚ୍ଚିତ ପଦକୁ ବାଞ୍ଛିତ
ସେବିବାକୁ କୁତୁହଳେ ହେ
ସଦା କରଥାଉଁ ମନ
ପ୍ରଭୁ ଦିଅ ଦିଅ ଦରଶନ ହେ ।୧।
ତୁମ୍ଭେ ଆମ୍ଭ ଗତି ତୁମ୍ଭେ ଆମ୍ଭ ମୁକ୍ତି
ତୁମ୍ଭେ ସକଳ ସଂପତ୍ତି ହେ
ଦାସୀମାନଙ୍କର ଅନୁ— କମ୍ପା, ଶ୍ୟାମତନୁ !
ହେଉ ରାମ ରଘୁପତି ହେ
ଅଟ ହେ ଶରଣବତ୍ସଳ
ତୋର ପଦ ସେବା ସିନା ମୂଳ ହେ ।୨।

ଶ୍ଲୋକଃ

**ଜାନକ୍ୟା ସହିତଃ ନାର୍ଯ୍ୟଃ ଶୋକାକୁଳିତ ମାନସାଃ**
**ଅବସନ୍ ପୁଲିନେ ତତ୍ର ରାମଦର୍ଶନ ବାଞ୍ଛିତାଃ ।୧୫**

ପୟାର

ନାରୀଗଣ ବୁଦ୍ଧିଶୂନ୍ୟ ଜ୍ଞାନକୁ ହରାଇ
ଶୋକାକୁଳେ ସର୍ବେ ହେଲେ ଶ୍ରୀରାମ ନପାଇ ହେ ।୧।
ସୀତା ସଙ୍ଗେ କଥା ରଙ୍ଗେ ସରଯୂ ପୁଲିନେ
ବସି ଦୁଃଖେ ଅଧୋମୁଖେ ଭଜି ରଘୁନାଥେ ହେ ।୨।
ଅସ୍ତବ୍ୟସ୍ତ ନାରୀଯୂଥ ମଧ୍ୟେ ସୀତା ବସି
ତାରା ପାଶେ ଶୋଭା ଦିଶେ ଜବା ପୂର୍ଣ୍ଣଶଶୀ ହେ ।୩।

ଅବନୀକ ଦୃଷ୍ଟି ନିକ ବର୍ମ୍ମୋଷ୍ଠି ସକଳ
ତାହା ମୁଖେ ମନ ସୁଖେ ନାହିଁ ବାକ୍ୟ ବଳ ହେ ।୪।

ବହେ ନୀର ଧାର ଧାର ଶ୍ରାବଣ ଆସାର
ଗଣ୍ଡେ ପାଣି ନିଦ୍ଧ ପୁଣି କେଉଁ ନାସ୍ତିବର ହେ ।୫।

କରଜରେ ଧର୍‌ପରେ ଗାର କେହୁ କାଟି
ଉରେ ହାତ ମାର୍ ନାଥ ବୋଲ୍ କେହୁ ଲୋଟି ହେ ।୬।

ଏହି ଧର ରସାଲୁସ୍ଥି ମତ ସ୍ୱରସିତ
ଏ ଉଲ୍ଲାସ ହେ ବଦୂଷ ହେଲା ଏଥି ଅନ୍ତ ହେ ।୭।

ଶ୍ଲୋକଃ

**ପୌଷେମାସ୍ୟ ସିତେପକ୍ଷେ ରାମରାସୋତ୍ସବେ ତଦା**
**ତୃତୀୟସ୍ତ୍ୱାୟମୁଲ୍ଲାସ ଏକାଦଶୀ ତିଥୌ ଗତଃ ।**

ପୟାର

ପୌଷମାସେ ଅତି ତୋଷେ କୃଷ୍ଣ ଏକାଦଶୀ
ରାମ ଦୟା ବଳେ ଆହା ଶେଷ ହେଲା ଆସି ହେ ।୧।

ଦେବ ଭାନୁ ଅସ୍ତ ସାନୁମାନେ ଯାଇ ନାହିଁ
ଏହିବେଳେ କୁତୂହଳେ ଶାନ୍ତି ବୁଧେ ସାଇଁ ହେ ।୨।

ଏ ଉଲ୍ଲାସ କଲ୍ ଶେଷ ହେ ବଦୂଷ ଶୁଣ
ରାମଭକ୍ତ ଅନୁରକ୍ତ ଯେତେ ଦାସ ଜନ ହେ ।୩।

କବିବର ପୀତାମ୍ବର ଜୟଦେବଙ୍କର
ପଦତଳେ କୁତୂହଳେ ହେଉଛୁ କିଙ୍କର ହେ ।୪।

ଆହେ ସାଧୁ ନିସ୍ପୃହ ଜ୍ଞାନମୟ ଜନେ
ମୁଁ ଶରଣ ଅନୁକ୍ଷଣ ତୁମ୍ଭ ଶ୍ରୀଚରଣେ ହେ ।୫।

ହୀନମତି ବୁଦ୍ଧିବୃତ୍ତି ମୋର କିଛି ନାହିଁ
ପ୍ରଭୁ ଦୟାବଳେ ଅହୋ ସାହସୀ ହୋଇଲିଁ ହେ ।୬।
କୃପାମୟୀ ରଘୁରାୟୀ ଶ୍ରୀମତୀ ଜାନକୀ
ପଦ ସେବା ବିନା ମୋର କେ ଅଛି ଆନ କି ? ।୭।
ପିତାମାତା ଆଉ ଚିନ୍ତା ଆଉ ମୋର କିସ
ମକରନ୍ଦ ପାନେ ଅନ୍ଧ ନୀଳକଣ୍ଠ ଦାସ ହେ ।୮।

ଇତି ଶ୍ରୀ ହରଗୌରୀ ସଂବାଦେ ଶ୍ରୀରାମ ବାସନ୍ତିକ ରାସୋତ୍ସବ
ବର୍ଣ୍ଣନେ ବିରହ-ବିଳାପୋ ନାମ ତୃତୀୟୋଽଲ୍ଲାସଃ ।୦।

## ଚତୁର୍ଥ ଉଲ୍ଲାସ

### ଶ୍ଳୋକଃ

**ପୁଲିନେଭୟବିଭ୍ରାନ୍ତା ମାରାଧିତପ୍ରମାନସାଃ**
**ଚକ୍ରନ୍ଦୁ ଖେଦ ସଂଯୁକ୍ତା ନାର୍ଯ୍ୟଃ ସୀତ ସମୀପଗାଃ । ୧**

### ପୟାର

ନାରୀଗଣେ ସେ ପୁଲିନ ଦେଖେଣ ଭୀତ ମନେ,
ଥରହରେ ଖେଦଭରେ କାନ୍ଦନ୍ତି ସ୍ୱମନେ ହେ ।୧।
ମଧ୍ୟେ ସୀତା ଗୁଣଯୁତା କରେ ହାହାକାର
ଆହା ନାଥ ରଘୁନାଥ ଆମ୍ଭ ହୃଦହାର ହେ । ୨
ବୋଲେ ଲୀଳା ପରମଳା ଶୁଣ ଗୋ ସଜନୀ ।
ହେଲ ସାର ହୃଦହାର ବିନା ସିନା ଧନୀ ଗୋ ।୩।
ନାମ ହେଜି ଜୀବ ତେଜି ଏ ସରଯୂ ବନେ
କୁତୂହଳେ ପଦତଳେ ବସିବା ସୁମନେ ଗୋ ।୪।
କେ ବୋଲଇ ଆଗୋ ସହି ଏହି ଲତା-ପାଶେ
ମରିବା ତ ରଘୁସୁତ ବିନେ ଅନାୟାସେ ଗୋ ।୫।
କେ ବୋଲଇ ରାମ ପାଇଁ ହେବା ପାଗଳୀ
କିସ କାର୍ଯ୍ୟ ଆଉ ଧାର୍ଯ୍ୟ କରିବ ଅବଳୀ ଗୋ ।୬।
ସଖୀଗଣଙ୍କ ବଚନ ଶୁଣି ଏହି ମତ
ମନମାୟା ବୋଲେ ବାୟା ହେଲ ରସବତ ଗୋ ।୭।
ରାଘବଙ୍କ ଯେ ଅନେକ ଜାଣନ୍ତି କପଟ
ଅନ୍ତର୍ଯ୍ୟାମୀ ସେହି ସ୍ୱାମୀ ପ୍ରଭୁ ରଘୁଶ୍ରେଷ୍ଠ ହେ ।୮।

ତାଙ୍କର ତ ଏ ଜୀବନ ସେ ନଷ୍ଟେ ରଖିବେ
ମୁଁ ବାତୁଳ ବୋଲେ ନୀଳ ସଦା ରାମ ଭାବେ ହେ ।୯।

ଶ୍ଳୋକଃ

**ଶ୍ରୀ ରାମଚନ୍ଦ୍ର ଭୁବି-ବିସ୍ତୃତ-କୀର୍ତ୍ତିଚନ୍ଦ୍ର**
**ସ୍ତୈରାସ୍ୟଚନ୍ଦ୍ର ରଜନୀଚର-ପଦ୍ମଚନ୍ଦ୍ର**
**ଆନନ୍ଦଚନ୍ଦ୍ର ରଘୁବଂଶ-ସମୁଦ୍ର-ଚନ୍ଦ୍ର**
**ସୀତା-ମନଃ କୁମୁଦଚନ୍ଦ୍ର ନମୋ ନମସ୍ତେ ।୨।**

ଧୁର୍ଘ

ନମୋ ପ୍ରଭୁ ରାମଚନ୍ଦ୍ର ତୁମ୍ଭର କୀରତ-ଚନ୍ଦ୍ର
ପ୍ରକାଶିତ ଏ ତିନି ଭୁବନେ
ନିଶାଚର-ପଦ୍ମବନ ନାଶନ ତାର-ରମଣ
ମୃଦୁହାସ ଶୋଭିତ ବଦନେ ହେ
ନାଥ ହେ
ଜୟ ଜୟ ହେ ଆନନ୍ଦ-ଚନ୍ଦ୍ର
ନିଖିଳ ସଦ୍‌ଗୁଣ ଗଣ କେନ୍ଦ୍ର ହେ ।୧।
ରଘୁବଂଶ କ ସେ ସିନ୍ଧୁ ତୁମ୍ଭେ ତ ପୂର୍ଣ୍ଣିମା ଇନ୍ଦୁ
ସୀତା ମନ କୁମୁଦ-କାନନ
ତୁମ୍ଭେ ତାର କଳାକର କାହିଁ ଅବହେଳା କର
ଅସ ଥରେ ଦିଅ ଦରଶନ ହେ
ନାଥ ହେ
ଜୟ ଜୟ ହେ ଆନନ୍ଦ-ଚନ୍ଦ୍ର
କୃପାମୟ ପ୍ରଭୁ ରାମଚନ୍ଦ୍ର ହେ ।୨।

## ଶ୍ରୀ ମହାଦେବ ଉବାଚ

ଶ୍ଳୋକଃ

**ଅନନ୍ତରଂ ଶ୍ରୀ ରଘୁନନ୍ଦନୋ ବିଭୁ**
**ହସନ୍ ସମନ୍ଦଂ ମଧୁରାଧରେଣହି**
**ନବାମ୍ବୁ ଦାଭୋ ମଦନାତି ସୁଂଦରୋ**
**ବିବେଶ ବୀଣାଂ ମଧୁରଂ ଚ ବାଦୟନ୍ ।୩।**

ଯଥା ରାଗ

ରଙ୍ଗାଧରେ ହସି ସଙ୍ଗାତ ରେ ଭାସି
ଗଙ୍ଗାଧର କହେ ବାଣୀ ହେ
ଘନକେଶି ! ଧନ ମନ ଦେଇ ଶୁଣ
ଗୁଣଗ୍ରାହୀ କୃପପାଣି ଗୋ
ଜାଣି ରମଣୀଙ୍କ ମନ
ସେହିକ୍ଷଣି ଦେଲେ ଦରଶନ ଗୋ ।୧।

ହସି ମନ୍ଦେ ମନ୍ଦେ ନାଚ ଛନ୍ଦେ ଛନ୍ଦେ
ନାନା ବନ୍ଦେ ବାଇ ବୀଣା ଗୋ
କାମ ଅଭିରାମ ଶ୍ୟାମ ରୂପ ରାମ
ବାମ ଭାଗେ ସୁଲକ୍ଷଣା ଗୋ
ଚାହୁଁ କାହୁଁ ହେଲେ ଆସି
ନାରୀଗଣ ପ୍ରେମାନନ୍ଦେ ଭାସି ଗୋ ।୨।

ସୀତା କନ୍ଧେ କର ଦେଇ ରଘୁବୀର
ମଧୁର ଅଧରେ ହସି ଗୋ

ଛିତ୍ୟେ ପ୍ରାଣମଣି ଜନକ-ଦୁଲଣି !
ଉନ୍ମାଦରେ ଏହା ଭଷି ଗୋ
ଧନୀ ଅଙ୍ଗେ ଗଲେ ମିଶି
ଦେବେ ଆନନ୍ଦେ ପୁଷ୍ପ ବରଷି ଗୋ ।ଘୋ।

ମାରି କରତାଳି ଦେଲେ ହୁଳହୁଳି
ନବୀନା କାମିନୀ ଚୟୁ ହେ
ଭାବି ସେ ମୂରତି ସେହି କାଳ ଗତି
ନୀଳକଣ୍ଠ ମୁଦମୟ ହେ
ବୋଲେ ଜୟ ସୀତାରାମ
ମୃଦୁହାସିନୀ ସୁଗୁଣ ଧାମ ହେ ।୪।

ଶ୍ଳୋକଃ

**ରାମ ଦର୍ଶନ ମାତ୍ରେଣ ବାମାଃ ପ୍ରେମାନ୍ଧମାନସାଃ**
**ସାନନ୍ଦଂ ରମୟାମାସୁ ସ୍ତନୈବ ହରିଣା ସମଂ ।୪।**

ଯଥା ରାଗ

ସକଳ ଶାରଙ୍ଗ— ନୟନା ଶ୍ରୀରଙ୍ଗ-
ଅଙ୍ଗ ସଙ୍ଗ ଲଭ କରି ଗୋ
ପ୍ରେମେ ମୋହମାନ ନାଗରୀ-ରତନ
ବିନୋଦେ ତୋଷିଲେ ହରି ଗୋ
କେବା କରି ମୃଦୁହାସ
ରାମ ପଦେ ନମିଲ ବିଶେଷ ଗୋ ।୧।

କେବଣ ସୁମନା　　　　　　ପ୍ରେମରେ ଉନ୍ମନା
ପ୍ରଭୁଙ୍କ ଯୁଗଳ ବାହୁ ଗୋ
ବଳେ ନିଜ ଗଳେ　　　　　　ଗଞ୍ଜିଲା ଚଞ୍ଚଳେ
କେବା ରୂପ ଗୃହୁଁ ଗୃହୁଁ ଗୋ
ହେଲା ଚଚ୍ଚାର୍ପିତ ପରି
ଚିତ୍ତ ବୃତ୍ତି ସବୁ ହେଲା ସାରି ଗୋ ।୨।
ଚର୍ବିତ ତାମ୍ବୁଳ　　　　　　ଧରି କର ତଳ
କେ ଆପଣା ମୁଖେ ଦେଇ ତେଗା
କେବା ପୁଷ୍ପହାର　　　　　　କାଢ଼ି ଉର ତର
ଦେଲା ପ୍ରଭୁ ଗଳେ ନେଇ ଗୋ
କେବା ସେ ପୀତ ଅଞ୍ଚଳ
ନିଜ କଣ୍ଠେ ଭିଡ଼ିଲା ଚଞ୍ଚଳ ଗୋ ।୩।
କେବା ପଦ ଧୂଳି　　　　　　ସର୍ବାଙ୍ଗରେ ବୋଳି
ନାଚିଲା ଉନ୍ମତ୍ତ ହୋଇ ଗୋ
ଶ୍ରୀରାମ ଶରୀରେ　　　　　　ଅତି ପ୍ରେମ ଭରେ
ତନୁ କେ ଦିଏ ମିଶାଇ ଗୋ
କେବା କର୍ପୂର ତାମ୍ବୁଳ
ଦେଲା ପ୍ରଭୁ ମୁଖେ ହୋଇ ଭୋଳ ଗୋ ।୪।
ପ୍ରେମେ ମତୁଆଳି　　　　　　ହେଲା ହୁଳହୁଳି
କେବା ବାନ୍ଧିଲା ସୁମନ ଗୋ
ସୁମନ-ଅଳଟେ　　　　　　ପକାଇ କେ ନାଟେ
କେ ବା ଧଇଲା ବ୍ୟଜନ ଗୋ
ନାଗ୍ରି କଲେ ପଟୁଆର
ନୀଳ ଭୂପେ ଜୟ ରଘୁବୀର ହେ । ୫ ।

ପୟାର

ରସବତୀ ପ୍ରେମେ ଅତି ପଲ୍ଲବ ଆସନେ
ବସାଇଣ ସୀତାରାମ ଅହା ସୁଯତନେ ହେ ।୧।
ଚତୁର୍ଦ୍ଦିଶ ନାରୀବଂଶ ଘେରି ହେଲେ ଉଭା
ଶଶୀ ଘେନି କି ରୋହିଣୀ ତାରା ମଧ୍ୟେ ଶୋଭା ହେ ।୨।
ସଖି ମନମାୟା ପୁଣି ହରଷିତେ ଅତି
ପ୍ରଭୁ କରେ ତାମ୍ବୁଳରେ ଅର୍ପିଲେ ଝଟତି ହେ ।୩।
ସେ କିଶୋର ପ୍ରେମଭର କିଶୋରୀଙ୍କି ଦେଇ
ହସି ସୀତା ଗୁଣଯୁତା ଶ୍ରୀରାମେ ଅନାଇଁ ହେ ।୪।
ସ୍ନେହ ଭରେ ଶ୍ରୀମୁଖରେ ଭରିଲେ ତାମ୍ବୁଳ
ସୀତା ମୁଖେ ମନ ସୁଖେ ଦେଲେ ରଘୁବାଳ ହେ ।୫।
ମୋଦ ମନେ ସଖି ଗଣେ ନାନା ସ୍ତୁତି ପଢ଼ି
ହୀନ ଶୀଳ ସେହୁ ସ୍ଥୂଳ ଉଭା କରଯୋଡ଼ି ।୬।

ଶ୍ଳୋକଃ

**ଜ୍ଞାତ୍ୱା ତୁ ମାନସଂ ତାସାଂ ଦିବ୍ୟପ୍ରେମରସାପ୍ଳୁତଂ**
**ସଭ୍ରୂଭଙ୍ଗଂ ସ୍ମିତେ ନୈବ ରାମସ୍ତାଃ ପର୍ଯ୍ୟତୋଷୟତ୍ ।୧।**

ଯଥାରାଗ

ରାମ ଯୋଗେଶ୍ୱର ରମଣୀ ଗଣର
ଜାଣି ଏହୁ ଦିବ୍ୟ ଭାବ ଗୋ
ଭ୍ରୂଭଙ୍ଗୀ ଭଙ୍ଗିମା ପ୍ରେମ ହାସ୍ୟ, ରମା-
ଗଣଙ୍କୁ ତୋଷି ରାଘବ ଗୋ
ସଖି ସଙ୍ଗେ ହେଲେ ଉଭା
ତ୍ରିଭଙ୍ଗିମ ରୂପ ଅତି ଶୋଭା ଗୋ ଗୋ ।୧।

ବାମେ ରାମ ନେଣା  କାମ-କଳ୍ପଲତା
ଜନକ ସୁତାଙ୍କ ନୃତ୍ୟ ଗୋ
କଟିର କିଙ୍କିଣୀ  ବାଜେ କଣି କଣି
ଯେଣୁ ସେ ପ୍ରେମେ ଉନ୍ମତ୍ତ ଗୋ
କାଞ୍ଚିଦାମ କ୍ଷୁଦ୍ର ଘଣ୍ଟି
ଉରଦେଶ ହାର ପଡ଼ ଉଠି ଗୋ ।୨।
ସଙ୍ଗେ ସଖିଗଣ  ନୃତ୍ୟରେ ମଗନ
'ବସନ ନରହେ ଦେହେ ଗୋ
ପ୍ରକାଶେ ଉକୁଟ  ଦ୍ରିମି ଦ୍ରିମି ଖିଟ
ତାଖିଟା ତାଖିଟା ଥେଏ ଗୋ
ତାଇ ଧିନା ଧିନା ଥେଇ
ଖିଟା ତାଖିଟା ତାଖିଟା ଧେଇ ଗୋ ।୩।
ଗୃହଧର ବୀଣା  ବାଜେ ମନ କଣା
ମୃଦଙ୍ଗ କଂସାଳ ତାଳ ହେ
ମୁରଜ ମୁରଲୀ  କେ ବଜାଏ ହଲି
କେବା ନାଚେ ଅତ ଭୋଳ ହେ
କେହୁ ଧରୁଅଛୁ ତାନ
କାର ନାହିଁ ଚତ୍ତ୍ୱ ବୃତ୍ତିଜ୍ଞାନ ହେ ।୪।
ଶ୍ରୀରାମଙ୍କୁ ଘେରି  ନାଚୁଛନ୍ତି ନାରୀ
ଅହା ଦାଶ କେଡ଼େ ତୋର ଗୋ
ବ୍ରହ୍ମା ପୁରନ୍ଦର  ସକଳ ଅମର
ହେଲେ ପୁଣି ଅମ୍ବହର ଗୋ
ଜୟ ଜୟ ବାଣୀ ଭଣି
ଗଙ୍ଗାମ୍ବାର ମନ୍ଦାର ବରଷି ଗୋ ।୫।

ଅହା କି ସୁନ୍ଦର ରାମ ରଘୁବର
ବାମେ ବିଜେ ସୀତା ରାଣୀ ଗୋ
ସର୍ବ ସଖିଗଣ ରୂପ କି ମୋହନ !
ଅହା କି ଲାବଣ୍ୟଠାଣି ଗୋ
ସେହି ମୂର୍ତ୍ତି ମନେ ଭାବି
ହୀନ ନୀଳକଣ୍ଠ ହେଲା କବି ରବେ ।

## ଆରାଧନା

ଶ୍ଳୋକଃ

**ପୂଜୟନ୍ତି ପରଂଭକ୍ତ୍ୟା ରାମଂ ଯୋଗେଶ୍ୱରଂ ତଦା**
**ବିହାୟ ବୈରହଂ ତାପଂ ସକଳା ନବଯୋଷିତଃ ।୬।**

ଗୀତ

ଯୋଗେଶ୍ୱରଙ୍କ ଈଶ୍ୱର ରଘୁନାଥ ପଦେ
ଦରଶନେ ଲଭି ମନେ ପୀରତି-ସଂପଦେ ହେ ।୧
କରି ନାଶ ନାରୀ ବଂଶ ବିରହଜ ତାପ
ପୂଜା କରେ ମାନସରେ ଧନ୍ୟ ତାଙ୍କ ତପ ହେ ।୨
କରଯୋଡ଼ି ପାଦେ ପଡ଼ି କହନ୍ତି ଅବଳା
ତୁମ୍ଭେ ସବୁ ଅଟ ପ୍ରଭୁ ସ୍ୱାମୀ ରଘୁବଳା ହେ ।୩
ଶିବ ବ୍ରହ୍ମା ତୋ ମହିମା ନପାରନ୍ତି ଜାଣି
କ୍ଷମାକର ଅମ୍ଭେ ତୋର ଅବଳା ରମଣୀ ହେ ।୪
ଅହେ ପ୍ରିୟ ମୁଦମୟ ଘେନ ପୂଜା ବିଧି
ନଜାଣୁ ତ ମନ୍ତ୍ରତନ୍ତ୍ର ଯେବା ଅଛି ସିଦ୍ଧି ହେ ।୫
ଅମ୍ଭ ନେତ୍ର-ଶତପତ୍ରମାଳା ଘେନ ଉରେ
ପ୍ରେମନୀର ଶ୍ରୀ ପୟର ପ୍ରକ୍ଷାଳନ କରେ ହେ ।୬

ଆମ୍ଭ ହୃଦେ ବସ ମୋଦେ ସେ ତ ସିଂହାସନ
ଭକ୍ତ ପ୍ରେମ ସୁଧାସମ ଅର୍ଘ୍ୟ ଦେନ ଧନ ହେ ।୭।
ତନୁ ବାସ ଗନ୍ଧ ସମ୍ବେଲ କଲା ଗୁରୁ
ଧୂପରୂପେ ଦେନ ଅପେ ଆହା ଅଭ ଗୁରୁ ହେ ।୮।
ନେନ୍ତ୍ର ତାର ଦୀପ ପରି କରୁଛୁ ଅର୍ଚ୍ଚନ
ପୁଷ୍ପାଞ୍ଜଳି ତୋ ମଙ୍ଗଳି ଭର ପଦ୍ମମାନ ହେ ।୯।
ଉପଚାର ଏ ଅମ୍ଭର ତୋତେ ମାନସିକେ
ଦୟାକର ହେ ଠାକୁର ଶ୍ରୀପଦ ସେବକେ ହେ ।୧୦।

ଶ୍ଳୋକଃ

**ବିଧିଂ ତଦା ମାନସିକଂ ଗୃହୀତ୍ୱା**
**ବାମାସୁ ସଂସକ୍ତମନାହି ରାମଃ**
**ତାସାଂ ମନୋବ୍ୟାଧିବିନାଶକାରୀ**
**ବଭ୍ରାମ ତାଭିଃ ସରଯୂ ତଟେହି ।୬**

ପୟାର

ଭାବଗ୍ରାହୀ ରଘୁସାଇଁ ଭାବେ ହେଲେ ବଶ
ମାନସିକ ଶଯ୍ୟାକ ଦେନ ହସ ହସ ହେ ।୧।
ନାରୀଗଣ ଅଭିମାନ ବିରହ ସନ୍ତାପ
ନାଶ କର ରୂପଧାରି ମୋହନ ସ୍ୱରୂପ ହେ ।୨।
ନାରୀରନ୍ଧ୍ର ପ୍ରେମମଧ୍ୟ ମନେ ନେନ୍ତ୍ର ବୁଜି
ମହାଭାବେ ପୁଣି ସର୍ବେ ଗଲେ ଖରେ ମଜ୍ଜି ହେ ।୩।
କୃପାମେରୁ ହର୍ବଭିରୁ ଦେନ କଲେ ଭଜେ
ସରଯୂର ରମ୍ୟସାର ପୁଳିନକୁ ନାଜେ ହେ ।୪।

ଶ୍ଳୋକଃ

**ବିକଶତ୍‌ଚମ୍ପକାଶୋକସମ୍ପର୍କୀ ମଲୟାନିଲଃ**
**ମିଳିନ୍ଦପିକନାଦଶ୍ଚ ଚକାର ମଧୁରଂ ଭୀରମ୍ ।୮**

ପୟାର

ଉମା ଶୁଣ ସେ ପୁଳିନ ଅତି ମନୋହର
ବିକଶିତ ପୁଷ୍ପପୁଞ୍ଜ ଶୋଭାନାଗେଶ୍ୱର ଗୋ ।୧।
ସେ ଅଶୋକ କୁରୁବକ ଦମୃଣା ମାଳତୀ
ମଧୁ ଲୋଭେ ଅଳି ସର୍ବେ ଝଙ୍କାର କରନ୍ତି ଗୋ ।୨।
ପରିମଳ ଘେନି ଶୀତଳ ମଳୟ ପବନ
ସୁରଭିତ ଆମୋଦିତ କରେ ଦିଗମାନ ଗୋ ।୩।
କୋକିଳର ମଧୁସ୍ୱର ଚିତ୍ତ ଦ୍ରବ କରେ
ନାରୀ ଘେନି ରଘୁମଣି ରଙ୍ଗରେ ବିହରେ ଗୋ ।୪।
ଧନ୍ୟ ନାରୀ ଗୃହଧାରୀ ଧନ୍ୟ ସେ ପୁଳିନ
ଲଭିବେ ନୀଳ ଅବିରଳ ଯୁଗଳ ଚରଣ ଗୋ ।୫।

ଶ୍ଳୋକଃ

**ଯୋଗିନାଂ ହୃଦୟାବାସଃ ପୂର୍ଣ୍ଣବ୍ରହ୍ମ ସନାତନଃ**
**ବସନ୍ ମୁମୋଦ ଚେତାଂସି ନାରୀଣାଂ ହୃଦୟାସନେ ।୯**

ପୟାର

ପୂର୍ଣ୍ଣ ବ୍ରହ୍ମ ସେହି ରାମ ନିତ୍ୟ ସନାତନ
ଯୋଗୀଗଣ ହୃଦେ ସ୍ଥାନ ଲଭେ ଯେହୁ ପୂର୍ଣ୍ଣ ହେ ।୧।
ନାରୀଯୂଥର କଳ୍ପିତ ହୃଦୟ-ଆସନେ
ବିରାଜିତ ହୋଇ ଚିତ୍ତ ହରିଲେ ସୁମନେ ହେ ।୨।

ରାମସଙ୍ଗ ଲଭି ରଙ୍ଗ ସଙ୍ଗୀତ ନିପୁଣା
ପ୍ରେମଭର ଯୋଗେଶ୍ୱର ଲଭିଣ ସୁମନା ହେ ।୩।
ସେହି ସ୍ଥାନେ ମୋଦମନେ ସକଳ ସୁନ୍ଦରୀ
ମଧ୍ୟେ ସୀତା ରାମସ୍ଥିତା ରସେ ସଖୀ କରି ହେ ।୪।
ଉତ୍ତରୀୟ ସମୁଦାୟ ସ୍କନ୍ଧେ ଥିଲେ ଭରି
ବାଲକୁନ୍ଦେ ଅତମୋଦେ ପାତଲେ ସୁନ୍ଦରୀ ହେ ।୫।
ସୁଚର୍ଚିତ ତହିଁ ମାନ କୁଚର କୁଙ୍କୁମ
ପ୍ରେମବଶେ ପ୍ରଭୁ ବକ୍ଷେ ବଇଦେହୀ ବାମ ହେ ।୬।
କି ସୁନ୍ଦର ରୂପସାର ରସରାଜ ମୂର୍ତ୍ତି
ବୀରବେଶ ହେବେ ରାସ ଈଶ୍ୱର ଶ୍ରୀପତି ହେ ।୭।
ଅହେ ସାଧୁ ପାଦ୍ମମଧୁ ପାନ କର ତୋଷେ
ସେ ଯୁଗଳ ପଦତଳ ସେବ ନୀଳ ଭାଷେ ସହ ।୮।

## ବୀର ବେଶ

ଯଥା ରାଗ

ଯତନ ସହିତ ରତନ ନିର୍ମିତ
ସିଂହାସନ କି ସୁନ୍ଦର ଗୋ
ହୀରା ନୀଳା ମୋତି ମାଣିକ୍ୟ ମର୍କତ
ପେନ୍ଥି ପେନ୍ଥି ମନୋହର ଗୋ
ଗୁନ୍ଥି ହୋଇ କି ଘଟଣି
ଅହା ନବରତ୍ନ ସିଂହାସନ ଗୋ ।୧।
ସୁବର୍ଣ୍ଣ ଖଞ୍ଜଣୀ ଚନ୍ଦ୍ରାତପ ଠାଣି
ମୁକ୍ତାମାଳୀ କେଉଁ କେଉଁ ଗୋ

ଦର୍ପଣ ଶୃମର ଖଦ୍ୱା ଅଡମ୍ବର
ସୁମନ ସମ୍ଭାର ଭର ଗୋ
ଚମ୍ପା ଝୁମ୍ପା କୁନ୍ଦଫୁଲ
ତ୍ରିଭୁବନ ଶୋଭା ଯାର ତୁଳ ଗୋ ।୨।
ବାମେ ଯେନ ବାମ— ନେତ୍ରାଙ୍କ ଶ୍ରୀରାମ
କାମ କୋଟି ରୂପ ଜଣେ ହେ
ବୀରବେଶ ଧାରୀ ତ୍ରିଭୁବନ ସାରି
ବିଜେ କଲେ ସିଂହାସନେ ହେ
ଏ ସରାଜ ରାଜ ମୂର୍ତ୍ତି
ପୁଷ୍ପ ଧନୁବାଣ ବିରାଜନ୍ତି ହେ ।୩।
ସୁମନ ଜଡିତ କବଚ ଭୂଷିତ
ବାହେ ଜଡ଼େ ବୀର ନେତ ହେ
ଶିରରେ ସୁବର୍ଣ୍ଣ ପାଗ ଶୋଭାବନ
ଏବ ପକ୍ଷୀ ତହିଁ ଶ୍ବେତ ହେ
ଅସରନା ସୂତା କରେ
ବାମେ ଯମଦାଢ଼ ଶୋଭା ଧରେ ହେ ।୪।
କଟିତଟେ ହେମ ମେଖଳା ସୁଷମ
ବାଙ୍କଛୁରୀ ତହିଁ ଖୋସା ହେ
ରତନ ବାହୁଟି ମୁଦ୍ରିକା ଅଙ୍ଗୁଠି
କମର ହୋଇଛୁ କସା ହେ
କୋଷେ ଝୁଲେ ତରବାରି
ପୃଷ୍ଠେ ଢ଼ାଲ ଛନ୍ତି ଅଢ଼କରି ହେ ।୫।
ଶ୍ରୀକର ଯୁଗଳ କଂକଣ ସକଳ
କରିଛୁ ଅପୂର୍ବ ଶୋଭା ହେ

ପୁଣି ଚତୁଃସମ                    ସର୍ବାଙ୍ଗେ ଲେପନ
ହୃଦେ କଉସ୍ତୁଭ ଆଭା ହେ
ମନ୍ଦହାସ ବିମ୍ବାଧରେ
ବାମ କରେ ଧନୀ କୋଳ କରେ ହେ ।୭।

ମକର କୁଣ୍ଡଳ                    ହେଉଛି ଚଞ୍ଚଳ
ଗଣ୍ଡ ମଣ୍ଡଳରେ ଅତ ହେ
ଶିରେ ରାମାନନ୍ଦୀ                    ମନ କରେ ବନ୍ଦୀ
ନାରୀ ଯେତେ କୁଳବତୀ ହେ
ବାଳୀଗଣେ ପଚ୍ଚୁଆର
ବୀର ବେଶ କେଡ଼େ ଚମତ୍କାର ହେ ।୭।

ରାମ କୋଳେ ଧନୀ                    କି ସୁନ୍ଦର ପୁଣି
ଶିବ  କୋଳେ ହୈମବତୀ ହେ
ଇନ୍ଦ୍ର କୋଳେ ଶୋଭା                    ଇନ୍ଦ୍ରାଣୀ କି ଅବା
ମଦନ ଅଙ୍କେ କି ରତି ହେ
ନାରୀଗଣେ ପଚ୍ଚୁଆର
ବୀର ବେଶ କେଡେ ଚମତ୍କାର ହେ ।୮।

କାମ ଉଦ୍ଦୀପନ                    ଦେଖି ନାରୀଗଣ
ସାଜିଛନ୍ତି ବୀର ବେଶ  ହେ
ସରବେ ସଯୋଗୀ                    ଭାବେ ଛନ୍ତି ସେବି
ରସରାଜ ରଘୁଈଶ ହେ
ଭାବ ସେହୁ କାଳଛବ
ଧ୍ୟାନ ନୀଳକଣ୍ଠ ହେଲ କବ ହେ ।୯।

ଶ୍ଲୋକଃ

**ଶ୍ୟାମାଃ କୋକିଳ ଭୃଙ୍ଗ ସାରିକଶୁକାଃ ଶ୍ୟାମାଶ୍ଚ ସର୍ବାଲତାଃ**
**ଶ୍ୟାମାଃ ସର୍ବ ମହୀରୁହାଃ ଫଳଭରାଃ ଶ୍ୟାମାନି ପୁଷ୍ପାଣି ବୈ**
**ଶ୍ୟାମା ଶ୍ଚକ୍ର କପୋତ ଖଞ୍ଜନ ମୃଗାଃ ଶ୍ୟାମଂ ଚ ତତ୍‌କାନନଂ**
**ଶ୍ୟାମାଃ ସର୍ବସଖୀଜନା ଜନକଜା ତତ୍ରାଭବତ୍ ଶ୍ୟାମଲା ୧୦**

ଚତୁସ୍ପଦୀ

ଶ୍ୟାମଲ ସୁନ୍ଦର ରାମ ଶ୍ୟାମାଙ୍ଗିନୀ ଜାନକୀ
ଶ୍ୟାମରେ ମିଳନ ଶ୍ୟାମା ଶୋଭା କିବା ଅନେକ ।୦।
ଶ୍ୟାମ ଭୃଙ୍ଗ ପିକଗଣ ଶୁକ ସାରିକା ଘଟଣି
ଶ୍ୟାମଲ ସୁନ୍ଦର ଲତା ମହୀରୁହ ଗଣ କି ।୧।
ଶ୍ୟାମ ଫଳ ମନୋହର ଶ୍ୟାମ ସୁମନ ସମ୍ଭାର
ଶ୍ୟାମଲ ଚକ୍ର କପୋତ ଶ୍ୟାମଲ ଖଞ୍ଜନ କି ।୨।
ଶ୍ୟାମଲ କାନନ ଶୋଭା ଶ୍ୟାମ ତନୁ ରାମ ପ୍ରଭା
ସଜନୀଗଣେ ଶ୍ୟାମଲ ସରଯୂ ଜୀବନ କି ।୩।
ଶ୍ୟାମଲ ମୟୂର ରାଶି ଶ୍ୟାମ ପ୍ରେମାର୍ଣ୍ଣବେ ଭାସି
ଶ୍ୟାମ ଶ୍ୟାମା ପଦେ ନୀଳ ପଶିଲା ଶରଣ କି ।୪।

## ନାୟିକା ପ୍ରଶ୍ନ

ଶ୍ଲୋକଃ

**ତବ ସଂଦର୍ଶନଂ ରାମ ଶିବେନାପି ସୁଦୁର୍ଲ୍ଲଭଂ**
**କଥଂ କାର୍ଯ୍ୟଃ କଥଂ ଯ୍ୟାମୋ ତ୍ୱତ୍ସେବାୟାଂ ପରାୟଣାଃ ।୧୫**

ପୟାର

ଯୋଗେଶ୍ବର ହେ ତୁମ୍ଭର ଦର୍ଶନାଭିଳାଷ
ପ୍ରାପ୍ତ ନୋହି ଦୁଃଖୀ ହୋଇ ସ୍ବୟମ୍ଭୂ ମହେଶ ହେ ।୧।
ଅପ୍ରମେୟ ରଘୁଦ୍ବୟ ଅମ୍ଭେ ଛାର ନାରୀ
କେଉଁ ଫଳେ ପଦତଳେ ହେବୁଁ ସେବାକାରୀ ହେ ।୨।

ଶ୍ଲୋକଃ

**ତବ ଦାସସ୍ୟ ଦାସାନାଂ ଶତ ସଂଖ୍ୟୋତ୍ତରସ୍ୟ ବା**
**ଦାସୀତ୍ବେ ନାଧିକାରୋଽସ୍ତି କୁତଃ ସାକ୍ଷାତ୍ତବୈବହି ।୧୧**

ପୟାର

ନୀଚ ଜାତି ସ୍ତ୍ରୀର ମତି ଅମ୍ଭେ ରଘୁବର
ତୋର ଦାସଙ୍କର ଦାସ ଅନୁଦାସଙ୍କର ହେ ।୧।
ଭାଗ୍ୟ କାହିଁ ରଘୁସାଇଁ ତାଙ୍କ ପଦସେବା
ପରିଜନ ରୂପେ ପୁଣି ଭଜନ କରିବା ହେ ।୨।
ଅସମ୍ଭବ ଆହେ ଦେବ ତବ ଦରଶନ
ଦୟାକର ହେ କିଶୋର ଅମ୍ଭେ ଦୀନ ହୀନ ହେ ।୩।
କେଉଁ ଫଳେ ପଦତଳେ ହେବୁ ସେବାକାରୀ
ନୀଳ ଧ୍ୟାନ ରଘୁରାଣୀ ରାମ ରୂପଧାରୀ ହେ ।୪।

ଶ୍ଲୋକଃ

**କଥଂ ରାମୋଦ୍ୟମେ ଦୃଷ୍ଟଃ ମନୋବାଗ୍‌ଭ୍ୟା ମଗୋଚର**
**ସ୍ତୋତୁଂ ନ ଜାନେ ଦେବେଶ କିଂ କରୋମି ପ୍ରସୀଦ ମେ ।୧୨**

ପୟାର

ଆହେ ଦାଶରଥି ରାସ ମୋହନ ସୁନ୍ଦର
ବାକ୍ୟମନ ଶତ୍ରୁ ଜ୍ଞାନ ଠାରୁ ଅଗୋଚର ହେ ।୧।

ସନାତନ ଶୁଦ୍ଧ ଜ୍ଞାନ ଅଟେ ବୁଦ୍ଧମୟ
ନିର୍ବିକାର ନିରାକାର ଅନାଦି ଅବ୍ୟୟ ହେ ।୨।
ନଜାଣୁ ଛ ସ୍ତୁତି ଗୀତ ପ୍ରସୀଦ ହେ ଦେବ
ନୀଳ ଭାସେ ପଦ ଦେଖେ ମୁଁ ସେବକ ଭାବ ହେ ।୩।

## ଶ୍ରୀରାମ ଉବାଚ

ଶ୍ଳୋକଃ

**ପୁଂସ୍ତ୍ୱେ ସ୍ତ୍ରୀତ୍ୱେ ବିଶେଷୋ ବା ଜାତିନାମାଶ୍ରମାଦୟଃ**
**ନ କାରଣଂ ମଦ୍‌ଭଜନେ ଭକ୍ତିରେବ ହି କାରଣମ୍ ।୧୩**

ପୟାର

ଆଗୋ ସଖି ବାଇ ନିକି ହେଲ କୁଶୋଦରି !
ମୋ ଭଜନ ଜାତି ଜ୍ଞାନ କୁଳ ଆଦ କରି ଗୋ ।୧।
ହେଉ ନୀଚ ଅବା ଉଚ୍ଚ ସତ ବା ଅସତ
କି ଉତ୍ତମ କି ଅଧମ ଗୃହୀ ସନ୍ନ୍ୟାସୀ ତ ଗୋ ।୨।
ଥିଲେ ଭକ୍ତି ମିଳେ ମୁକ୍ତି ମୋର ପଦତଳେ
ଭକ୍ତି ଏକା ଗୋ ରସିକା ମୂଳଟି ଶସ୍ତୁଲେ ଗୋ ।୩।

ଶ୍ଳୋକଃ

**ଯଜ୍ଞଦାନ ତପୋଭିର୍ବା ବେଦାଧ୍ୟୟନ କର୍ମଭିଃ**
**ନୈବ ଦ୍ରଷ୍ଟୁ ମହଂ ଶକ୍ୟୋ ମଦ୍‌ଭକ୍ତି ବିମୁଖୈଃ ସଦା ।୧୪**

ପୟାର

ଯଜ୍ଞ ଦାନ ତପ କର୍ମ କଲେ କିବା ହୋଇ
ନିତ ନିତ ବେଦ ଗୀତ ଗାଇ କିବା ପାଇ ଢଗା ।୧।

ଯେବେ ନାହିଁ ମନେ ସହି ଭକତ ମୋ ପାଦେ
ଅକାରଣ ସବୁ ଜାଣ ହୁଏ ଅପ୍ରମାଦେ ଗୋ ।୨।
ସେହି ଜନ ମୂଢ଼ ଜ୍ଞାନ ହୀନ ବୋଲି ଜାଣ
ନଲଭଇ କେବେ ସେହି ମୋର ଦରଶନ ଗୋ ।୩।

ଶ୍ଳୋକଃ

**ତସ୍ମାତ୍ ଭାମିନିସଂକ୍ଷେପାତ୍ ବକ୍ଷ୍ୟାହଂ ଭକ୍ତି ସାଧନଂ**
**ସତାଂ ସଙ୍ଗତି ରେବାତ୍ର ସାଧନଂ ପ୍ରଥମଂ ସ୍ମୃତମ୍ ।୧୪**

ପୟାର

ତୁମ୍ଭେ ମୋର ମୁଁ ତୁମ୍ଭର ହୃଦୟ ଦେବତା
ତେଣୁ ସିନା ଗୋ ନବୀନା କହେ ଭକ୍ତ ଗାଥା ଗୋ ।୧।
ଅତ ଅଳ୍ପ କାମକଳ୍ପଲତା ଅଟେଗୋ ଶୁଣ
ସତ ସଙ୍ଗ କଥା ରଙ୍ଗ ପ୍ରଥମ ବିଧାନ ଗୋ ।୨।
ଏ ଅଭ୍ୟାସ ନାସ୍ତିଇଶ ସଦା ତୋଷେ କର
ଅନ୍ତେ ଭକ୍ତ ପୁଣି ମୁକ୍ତ ହେବ ରମାବର ଗୋ ।୩।

ଶ୍ଳୋକଃ

**ଦ୍ୱିତୀୟଃ ମତ୍ କଥାଳାପ ସ୍ତୃତୀୟଂ ଗୁଣକୀର୍ତ୍ତନଂ**
**ବ୍ୟାଖ୍ୟାତୃତ୍ୱଂ ମଦ୍‌ବଚସାଂ ଚତୁର୍ଥଂ ସାଧନଂ ଭଜେତ୍ ।୧୬**

ପୟାର

ମୋ ଚରିତ କଥା ନିତ୍ୟ କର ଅଳାପନା
ଅଟେଗୋ ସହି ଅଟେ ଏହି ଦ୍ୱିତୀୟ ସାଧନା ଗୋ ।୧।
ସଂକୀର୍ତ୍ତନ ମୋର ଗୁଣ ତୃତୀୟ ଉପାୟ
ହେତୁ କର ରମାବର ମନେ ସନ୍ଧିପାୟ ଗୋ ।୨।

ଏ ଉପାୟ ନାରାୟଣ ଚତୁର୍ଥରେ ଶୁଣ
ମୋ ଚରିତ ସୁବଖ୍ୟାତ ଗୁଣ ଆଳାପନ ଗୋ ।୩।

ଶ୍ଲୋକଃ

**ଆଚାର୍ଯ୍ୟୋପାସନଂ ଭଦ୍ରେ ସଦ୍ବୁଦ୍ଧ୍ୟାମାୟୟା ସଦା**
**ପଞ୍ଚମଂ ପୁଣ୍ୟଶୀଲତ୍ୱଂ ଯମାଦି ନିୟମାଦିଚ ।୧୭**

ପୟାର

ଗୁରୁ ପାଦେ ଅପ୍ରମାଦେ ବୁଦ୍ଧି ଜ୍ଞାନ ଧରି
ପୁଣ୍ୟଶୀଳ ଅବକଳ ନିୟମ ଆଚରି ଗୋ ।୧।
ସେ ସଂଯମ ଯେ ନିୟମ ପ୍ରାଣାୟାମ ଧ୍ୟାନ
ଯେ ଧାରଣା ସୁମଧ୍ୟମା ମାନସରେ ଘେନ ଗୋ ।୨।
ପଞ୍ଚମରେ ଏହା କରେ ମୋହର ଭକତ
ସମାଧିକି ଯେବା ସାଧି ଷଷ୍ଠ ପ୍ରାଣମିତ ଗୋ ।୩।

ଶ୍ଲୋକଃ

**ନିଷ୍ଠାବତ୍ ପୂଜନଂ ନିତ୍ୟଂ ଷଷ୍ଠଂ ସାଧନ ମୀରିତଂ**
**ମମ ମନ୍ତ୍ରୋପାସକତ୍ୱଂ ସାଙ୍ଗଂ ସପ୍ତମ ମୁଚ୍ୟତେ ।୧୮**

ପୟାର

ଉପାସନା ସୁଲୋଚନା ଷଷ୍ଠେ ମୋତେ କର
ନିଷ୍ଠାସହ ନାରାୟଣ ହେତୁ ଥାଅ ଧରି ଗୋ ।୧।
ମୋର ମନ୍ତ୍ର ପୁଣି ଯନ୍ତ୍ର ସପ୍ତମ ସାଧନ
ହେତୁ କର ବମ୍ବାଧର । କରିବ ଧାରଣ ଗୋ ।୨।
ମୋତେ ପୂଜ ନାମ ହେଜ ଅନୁଷ୍ଠାନ କର
ବୋଲେ ନୀଳ ରଘୁବାଳ ଶ୍ରୀପଦ-କିଙ୍କର ଗୋ ।୩।

ଶ୍ଳୋକଃ

**ମଦ୍‌ଭକ୍ତି ଷ୍ୱାଧିକ୍ବା ପୂଜା ସର୍ବଭୂତେଷୁ ମନ୍ମତିଃ**
**ବାହ୍ୟାର୍ଥେଷୁ ବିରାଗିତ୍ୱଂ ଅଷ୍ଟମଂ ସାଧନଂ ତଥା ।୧୯**

ପୟାର

ମୋର ଭକ୍ତ ଅନୁରକ୍ତ ଗଣଙ୍କ ପୂଜନ
ସର୍ବ ଘଟେ ଯେ ପ୍ରକଟେ ଈଶ୍ୱର ପ୍ରମାଣ ଗୋ ।୧।
ବାହ୍ୟ ଦ୍ରବ୍ୟରେ ବୈରାଗ୍ୟ ଇନ୍ଦ୍ରିୟ ନିଗ୍ରହ
ମୁଁ ଏଲ୍ଲରନେ ରଖ ମନେ ଅଷ୍ଟମ ଉପାୟ ଗୋ ।୨।
ବ୍ରହ୍ମତତ୍ତ୍ୱ ଜାଣି ନିତ୍ୟ ଭକ୍ତର ସାଧନ
ସର୍ବଭୂତେ ଅନନ୍ଦତେ କରୁଣା ପ୍ରଦାନ ଗୋ ।୩।
ଲଭ କଷ୍ଟ ଏ ମୋ ଅଷ୍ଟ ସାଧନାକୁ କର
ହେବ ଗତ ପୁଣି ମୁକ୍ତ ଅନ୍ତେ ରମାବର ଗୋ ।୪।

ଶ୍ଳୋକଃ

**ତତଶ୍ଚ ନବମଂ ତତ୍ତ୍ୱଂ ବିଗ୍ରରୋମମ ଭାମିନି !**
**ଏବଂ ନବବିଧଂ ଭକ୍ତିସାଧନଂ ଯସ୍ୟକସ୍ୟବା ।୨୦**

ପୟାର

ଏହାପର ଗୋ ସୁନ୍ଦରି ଭକତ ସାଧନ
କର ଶ୍ରଦ୍ଧା ଏ ନବଧା ରମଣୀ-ରତନ ଗୋ ।୧।
ହେଉ ଉଚ୍ଚ ଅବା ନୀଚ ମୂର୍ଖ ଜ୍ଞାନହୀନ
ଯେବେ ମୋର ଭକ୍ତିସାର ଥାଏ ତାର ମନ ଗୋ ।୨।
ହୁଏ ମୁକ୍ତ ରସବନ୍ତ ଅନ୍ତମେ ତାହାର
ମୋର ପଦେ ଅପ୍ରମାଦେ ଲଭେ ସୁଖକର ଗୋ ।୩।

ଅଗୋ ସଖି ତୁମ୍ଭେ ଏଥି ଭକତ ପ୍ରମାଣେ
ରାସୋତ୍ସବ ଅଭିନବ ବିହାର କାନନେ ଗୋ ।୩।
ଯୁଗେ ଯୁଗେ ପଦଭାଗେ ତୁମ୍ଭେ ମୋର ଦାସୀ
ଅଗୋ କାମଲତା ପ୍ରେମମୟୀ ମଦାଳସି ଗୋ ।୪।
ଏହିପରି ରୂପଧାରି କହି ଭକ୍ତଗାଥା
ପ୍ରେମଭରେ କାନନରେ ଭ୍ରମେ ଧରି ସୀତା ଗୋ ।୬।
ମୋହି ମନ ରଘୁରାଣି ପ୍ରମଦାଗହଣେ
ମହାନନ୍ଦେ ଛନ୍ଦେ ଛନ୍ଦେ ଭ୍ରମନ୍ତି କାନନେ ଗୋ ।୭।

ଶ୍ଳୋକଃ

**ଅମାବାସ୍ୟାତିଥୌ ପୌଷେମାସି ରାସୋତ୍ସବେ ଶୁଭମ୍**
**ଚତୁର୍ଥଶ୍ଚାସ୍ୟ ମୂଲ୍ଲାସୋ ରାମସ୍ୟ ବିଗତଃ ଖଲୁ ।୨୧।**

ପୟାର

ଏଥି ଶେଷ ଏ ଉଲ୍ଲାସ ପରମ-ରହସ୍ୟ
ବୁଧକୁଳ ହେ ବକୁଳ ଅମାସ୍ୟା ଦିବସ ହେ ।୧।
ପୌଷମାସେ ଅଛି ତୋଷେ କୃଷ୍ଣପକ୍ଷ ପରେ
ସୀତାରାମ ଅବିରାମ ଚିନ୍ତି ଶେଷ କରେ ହେ ।୨।
ଅହେ ସାଧୁ ଜ୍ଞାନମୟ ନିଷ୍କୁଳିଙ୍ଗ ଜନେ
ମୁଁ ଟରଣି ନିବେଦନ ତୁମ୍ଭ ଶ୍ରୀଚରଣେ ହେ ।୩।
କବିବର ପୀତାମ୍ବର ଜମ୍ବୁଦେବଙ୍କର
ସଦାକାଳେ କୁତୂହଳେ ହେଉଛନ୍ତି କିଙ୍କର ହେ ।୪।
ଅନୁରକ୍ତ ରାମଭକ୍ତ ସାଧୁ ସନ୍ଥଗଣେ
ଅପରାଧ ଛେଦବାଦ ନଘେନିବ ମନେ ହେ ୫

କୃପାମୟୀ ରଘୁରାୟୀ ଶ୍ରୀମତୀ ଜାନକୀ
ପଦ ସେବା ବିନା ଅବା କେ ମୋର ଅନକୀ ? ।୬।
ପିତାମାତା ଆଉ ତ୍ରାତା ମୋର ଅଛୁ କିସ
ପଦ ତଳେ ଲୁଚୁଥିଲେ ନୀଳକଣ୍ଠ ଦାସ ହେ ।୭।

ଚୂଳା

ସାହା ସାହା ଦେବ ରଘୁନାଥ
ରକ୍ଷା କର ସୀତା ଦେବୀ କାନ୍ତ ।୧।
ମଦନ ମୋହନ ଶ୍ୟାମ ତନୁ
ଭବ ମୋ ନଯାଉ କେବେ ମନୁ ।୨।

ଇତି ଶ୍ରୀ ହର ଗୌରୀ ସମ୍ବାଦେ ଶ୍ରୀରାମ ବାସନ୍ତିକ ରାସ ବର୍ଣ୍ଣନେ
ବିଳାସଚନ୍ଦ୍ରୋଦୟୋ ନାମ ଚତୁର୍ଥ ଉଲ୍ଲାସଃ ।୦।

## ପଞ୍ଚମ ଉଲ୍ଲାସ

ଶ୍ଳୋକଃ

**ପଞ୍ଚମେ ସୀତୟା ସାର୍ଦ୍ଧଂ ସୁନ୍ଦରୀଭିଃ ସହାନ୍ୱତ**
**ବିହାରଂ ଜଳକ୍ରୀଡାଂଚ ଚକାର ରଘୁନନ୍ଦନଃ ।୧**

ପୟାର

ସାଧୁଜନ ମୋଦମନ ହୋଇ ଏହି ଗାଥା
ଶୁଣ ହେତ, ପାପ ହର ଦିବ୍ୟରସ କଥା ହେ ।୧।
ଏ ଉଲ୍ଲାସେ ରାମ ରସେ ଜାନକୀ ସହିତ
ପୁଣି ନାରୀ ସଙ୍ଗେ କରି ମୋହିବେ ଅଚ୍ୟୁତ ହେ ।୨।
ଲଭି ଶ୍ରମ ସେହି ରାମ ରମଣୀ ସଙ୍ଗରେ
ଜଳ କେଳି ଭଲି ଭଲି ସରଯୂର ନୀରେ ହେ ।୩।
ଏହି ରସ ହେ ବିଦୁଷ ଏ ଉଲ୍ଲାସେ ଶେଷ
ଭାବେ ନୀଳ ରଘୁବୀର ଚରଣ-ସାରସ ହେ ।୪।

## ମହାଦେବ ଉବାଚ

ଶ୍ଳୋକଃ

**ଲବ୍ଧ୍ୱାଙ୍ଗସଙ୍ଗମ୍ ରାମସ୍ୟ ସକଳା ବାମଲୋଚନାଃ**
**ବିହ୍ୱଳା, ରାମଚନ୍ଦ୍ରୋପି ତାସାଂ ଭାବେ ନିମଜ୍ଜିତଃ ।୨**

ଯଥା ରାଗ

ଶୁଣ ପ୍ରିୟ ବାମା ଗିରିବର ଜେମା
ଲଭି ପ୍ରଭୁ ଅଙ୍ଗ ସଙ୍ଗ ଗୋ

ସବୁ ରସବତୀ ବିହ୍ୱଳିତ ମତି
ବିହରନ୍ତି ନାନାରଙ୍ଗ ଗୋ
କେବା କହେ ସେହୁ ଲୀଳା
ଯୋଗେଶ୍ୱର ଯହିଁ ହେଲେ ଭେଳା ଗୋ ।୧।
ଯୋଗୀନ୍ଦ୍ର ହୃଦୟୁ ଆସନେ ଯେ ବସି
ନିତି ନାନା ଖେଳା କରେ ଗୋ
ପ୍ରେମଭକ୍ତି ଭାବେ ରମଣୀ ସରବେ
ବଶ କଲେ ସେ ପ୍ରଭୁରେ ଗୋ
ଭାବଗ୍ରାହୀ ଭାବଙ୍କ
ନୀଳକଣ୍ଠ ଶ୍ରୀପଦ ସେବକ ଗୋ ।୨।

ଶ୍ଲୋକଃ

**କାଚିଦ୍ଗାୟତି କାଚିଚ୍ଚ ପ୍ରେମୋନ୍ମତ୍ତାଃ ନୃତ୍ୟତି**
**କା ବା ଧୂଳୌ ବିଲୁଣ୍ଠନ୍ତି ତନ୍ମୟା ବାମଲୋଚନା ।୩**

ଯଥା ରାଗ

ହୋଇ ପ୍ରେମଭର କେଉଁ ନାରୀବର
ଉନ୍ମତ୍ତରେ ନୃତ୍ୟ କରି ଗୋ
ସ୍ତନୁ ଖସେ ବାସ କେବା ଉପହାସ
କେ ବା ତାଳମାନ ଧରି ଗୋ
କେହୁ ନାନା ଗୀତ ଗାଏ
କେହୁ କହେ ଜୟ ରାମରାୟେ ଗୋ ।୧।
ବାଳକ ସଦୃଶ କେଉଁ ନାରୀଗଣ
ଧୂଳି ଖେଳେ ହୁଏ ମତ୍ତ ଗୋ

କର ଧୂଳି ଧର ଲେଖି ଉତପର
ଶ୍ରୀରାମ ମୂର୍ତ୍ତି ଯେମନ୍ତ ଗୋ
ତାଳି ମାରି ନାଚ ଯାଏ
ପଦେ ପଢ଼ି ହେବା ଧୁତ ଗାଏ ଗୋ ।୨।
କଟିର କଙ୍କିଣୀ ବାଜେ କଣି କଣି
କାଞ୍ଚିଦାମ କ୍ଷୁଦ୍ର ଘଣ୍ଟି ଗୋ
କେବଣ ଅବଳା ପଦେ ନାଚେ ବଳା
କେ ନାଚଇ ପଢ଼ି ଝଟି ଗୋ
ଧନ୍ୟ ସରଯୂ ପୁଳିନେ
ରାମ ପ୍ରେମରସେ ହେଲ ମଗ୍ନ ଗୋ ।୩।

ଶ୍ଳୋକଃ

**ଭଂଭଂ ନାଦଂ କରୋତି ଭ୍ରମତି ଚ ଭ୍ରମରଃ କୋକିଳଃ ପଞ୍ଚମଂ ଚ କିଂବା ଟଙ୍କାର ନାଦଂ କଳୟତି ମଦନୋ ମାଦକ ପ୍ରେମରାଶୌ ସର୍ବା ବାମାସ୍ତବାହ୍ନି ସକଳ ଗୁଣଯୁତା ରାମ ପ୍ରେମା ବହ୍ନାସା ଗାୟନ୍ତ୍ୟୋ ରାମ ରାମ ଭବବିଜୟଗୁରୋ ଚେତିମଗ୍ନାସ୍ଥଳାତସ୍ୟ**

ଯଥା ରାଗ

ରାମ ପ୍ରେମ ବଶେ ମଧୁର ଅବେଶେ
ପଶୁ ପକ୍ଷୀ ହେଲେ ମତ୍ତ ହେ
ଭୃଙ୍ଗ ଭଣି ଭଣି ଧ୍ୱନି ରଣି ରଣି
ଫୁଲ କୋଳେ କାଦମ୍ବିନୀତ ହେ
ପିକ ପଞ୍ଚମରେ ଗାଏ
ଶୁକ ସାରି ପାଗଳ ପରାୟେ ହେ ।୧।

ବିଳସିତ ରାସେ ପ୍ରେମ ପରହାସେ
ଗାଇ ଜୟ ରାମ ରାମ ଗୋ
ସକଳ ବିଳାସ— ରତୀଙ୍କର ରସ
ମଦନ ମାଦକ ପ୍ରେମ ଗୋ
ଆଲମ୍ବନ ଉଦ୍ଦୀପନ
ସବୁ ବିକାର ହେଲା ଜନମ ଗୋ ।୨।
ମତ୍ତଭରେ ନୃତ୍ୟ ତନୁ ସ୍ୱେଦଯୁକ୍ତ
ଖସେ ତଳେ ବିନ୍ଦୁ ବିନ୍ଦୁ ହେ
କିବା ସୁଧାରାଶି ଦେଉଛି ବରଷି
ଧରି ଅଙ୍ଗ ମୂର୍ତ୍ତିଇନ୍ଦୁ ହେ
ଶୁଭେ ଲଳିତ ହୁଙ୍କାର
ପ୍ରେମମାଦକ କାମ ଓଁକାର ହେ ।୩।

ଶ୍ଳୋକଃ

**ପ୍ରେମଭାବବଶୋରାମୋ ମୋହୟନ୍ ସକଳାବଳାଃ**
**ଚୁଚୁମ୍ବ ବଦନଂ ତାସାଂ ପରିରମ୍ଭଂ ଚକାର ଚ ।୪**

ପୟାର

ଭାବାବେଶ ରୂପଈଶ ପ୍ରେମରେ ଧାରଣି
ଏକସ୍ଥାନ କିବା ଧନ କୋଟିଏ ମଦନ ଗୋ ।୧।
ମୃଦୁତାନ ବୀଣାସ୍ୱନ ତ୍ରିଭଙ୍ଗିମ ଶୋଭି
ବିମୋହିତ ନାରୀଯୂଥ ଦେଖି ଏହି ପ୍ରଭୁ ହେ ।୨।
କାର ମୁଖେ ମନ ସୁଖେ ରଘୁକୁଳ ପତି
ମୋଦ ମନେ ସୁଚୁମ୍ବନେ ଅର୍ପଣ କରନ୍ତି ହେ ।୩।

ମନ୍ଦ ହାସେ ବାହୁପାଶେ କେ ହୁଏ ବନ୍ଧନ
ଫରିଚମ୍ପକ ଅରମ୍ଭ ଦଶେ ସୁମୋହନ ହେ ।୪।
ଅପସର କାର ଉର କାହିଁ ନଖ କ୍ଷତ
କାହା କନ୍ଧରେ ଆନନ୍ଦ ବାହୁ ସମର୍ପିତ ହେ ।୫।
କେଉଁ ନାରୀ ରୂପଧାରୀ କୋଳେ ଗଲା ମିଶି
ନୀଳ ଭାବ ସେ ରାଘବ ରୂପ ଦବା ଜାଣି ହେ ।୬।

## ଚତୁଷ୍ପଦୀ

(ରାଗ ଶନୋଦନୀ ଚମ୍ପକ ବରଣୀ ବାଣୀରେ)

ବିଳସିତ ରସେ ହାସ ପରିହାସେ ରସବତୀଗଣ ପ୍ରେମଭର
ନବରସାନନ୍ଦ-ସିନ୍ଧୁ ରଘୁଚନ୍ଦ୍ର ସୁଲଳିତ ଖେଳା ଧୀର ଧୀର ।୦।
ସରଯୂ ପୁଳିନ ସୁରମ୍ୟ କାନନ
ସୁମନ ହସୁଛି ଦରଦର
ଏ ବନ ରାଣୀକି ପିନ୍ଧି କଙ୍କଣୀକି
ରଭସେ ନାଚୁଛି ଥରଥର ।୧।
କଟିର କଙ୍କିଣୀ ନାଚେ କଣି କଣି
ସୁବିଶାଳ ଉରେ ଚନ୍ଦ୍ରହାର
ତ୍ରିକାଶେ ଉକୁଠ ତାତା ଥେଇ ଛିଠ
ତା ଛିଠି ତା ଛିଟି ଛିଟା ଧୀର ।୨।
ନାଚେ ଶୁକ ସାରି ମୟୂର ମୟୂରୀ
କଳ କଳ ରବେ ନଦୀ ନୀର
ଅମର ଅମରୀ ଶୂନ୍ୟେ କ୍ରୀଡ଼ା କରି
ପାରିଜାତ ବୃଷ୍ଟି ତତପର ।୩।

ସୁରସ ସାଗରୀ ସେ ନବ ନାଗରୀ
ପ୍ରେମରେ ଉନ୍ମତ୍ତ ବାରମ୍ବାର
ରସର ସାଗର ନବୀନ ନାଗର
ଅନୁରାଗ ବଶେ ଜରଜର ।୪।
ପ୍ରେମରେ ଉନ୍ମତ୍ତ ଗାଇ ନାନା ଗୀତ
ସଙ୍ଗୀତ ମାଧୁରୀ ସୁମଧୁର
ଦ୍ରବ ଯିବ ପବ ଭବ ସେହ୍ନ ଛବ
କବ ଘ୍ଣର ହେବେ କି ମାତର ।୫।
ଆହା କି ସୁନ୍ଦର ମଦନ-ସୁନ୍ଦର
ବାମେ ସୀତା ରାଣୀ ମନୋହର
ଚଉଦଗେ ଘେର— ଛନ୍ତି ସହଚରୀ
ମୀଲ ସେବା ସେହ୍ନ ଶ୍ରୀପଦର ।୬।

ଶ୍ଲୋକଃ

**ତତୋ ଯୋଗେଶ୍ବରୋ ରାମୋ ମାଧବୀ କୁଞ୍ଜ ସନ୍ନିଧୌ**
**କଥୟାମାସ ସୀତାର୍ଯ୍ୟେ ରହ୍ସି ଖେଲନଂ ଯଥା ।୬**

ପୟାର

ସେ ସାଧବୀଙ୍କୁ ମାଧବୀ କୁଞ୍ଜରେ ବସାଇ
ସଖୀ ସଙ୍ଗେ କଥା ରଙ୍ଗେ ମାନସ ରସାଇ ହେ ।୧।
ବୋଲେ ବାଣୀ ରଘୁମଣି ଯୋଗୀଙ୍କ ଈଶ୍ବର
ଅଗୋ ଧନ ମୋ ବଚନ ଶୁଣ ତତପର ଗୋ ।୨।
ଏତ ମଧୁ କାଳ ବଧୁ ବଦନା ସୁନ୍ଦରୀ
ମୁଁ ଆଚରି ଇଚ୍ଛା କରି ଖେଳିବା ରହ୍ସି ଗୋ ।୩।

ଧୀରେ ହସି ଧନୀ ଭାଷି ଯେ ତୁମ୍ଭର ଇଚ୍ଛା
ଦାସୀଗଣେ କ୍ଷଣେ ଛାଡ଼ ପଠାଇବା ବାଞ୍ଛା ଗୋ ।୪।
ପ୍ରାଣେଶ୍ୱର ଯେ ତୁମ୍ଭର ଅମୃତଟି ତାହା
ଖେଳରସ କର ଭାଷ ନୀଳକଣ୍ଠ ଏହା ହେ ।୫।

ଶ୍ଳୋକଃ

**ବନଦେବୀ ତଦାଜ୍ଞାତ୍ୱା ମାନସଂ ଜାନକୀପତେଃ**
**ତଇଁଶୀ ଖେଳ ସାମଗ୍ରୀଂ ଦତ୍ତବତ୍ୟଞ୍ଜସା ପ୍ରିୟେ ।୭**

ଯଥା ରାଗ

ଜାଣି ପ୍ରଭୁ ମନ ବନ ଦେବୀଗଣ
ତଇଁଶୀ ବିଧାନ ସାଜ ହେ
ଶ୍ରୀରାମ ପାଖରେ ଦେଲେ ଅବଶେଷେ
ନବ ପ୍ରେମରସେ ମଜ୍ଜି ହେ
ପ୍ରେମଭରେ ରସାନନ୍ଦ
ଧନୀ ସଙ୍ଗେ ହସି ମନ୍ଦ ମନ୍ଦ ହେ ।୧।
ଧରେ କେଉଁ ବାଳୀ ଅମ୍ବରର ଝୁଲୀ
କଟିଭାଗେ ଖୋସି ଦେଇ ହେ
ଚନ୍ଦନ ପଙ୍କର ଗୋଲା ସମାବର
ଧର କେହୁ ଜଭ ହୋଇ ହେ
କେବା ପିଚକାରୀ ଧରେ
ସୁବାସିତ ଜଳ ପୂର୍ଣ୍ଣ କରେ ହେ ।୨।
ପ୍ରେମେ ଧୀରେ ହସି ରଘୁବଂଶ ଶଶୀ
ଫଗୁ ସୀତା ଉପରେ ଫିଙ୍ଗି ହେ

ସ୍ତନ ଦେଶେ ଜଡ଼ି ପଡ଼େ କିବା ଗଡ଼ି
ଲୋହିତ ଜାହ୍ନବୀ ସଙ୍ଗୀ ଗୋ
ତାଳି ମାରି ହସେ ଶ୍ୟାମ
ଧନୀ ଫିଙ୍ଗେ ଫଗୁ ଅବିରାମ ଗୋ ।୩।
ନୀଳ ଶ୍ରୀ ଅଙ୍ଗରେ ପଡ଼ି କି ଭଙ୍ଗୀରେ
ଦିଶେ ଅତି ବିମୋହନ ହେ
ମର୍କତ ନିର୍ମିତ ଶରୀର ବ୍ୟକତ
ଏ କି ଲୋହିତ ରତନ ଗୋ
କେହୁ ମାରେ ପିଚକାରୀ
ସୁବାସିତ ଜଳ ବୃଷ୍ଟି କରି ଗୋ ।୪।
ଅବିରର ରଜ ପୂରିଲା ସହଜ
କ୍ଷଣକେ କାନନ ସ୍ଥଳ ଗୋ
ଲୋହିତ ନୀରଦ ଆସ୍ତରଣି ମୋଦ
ହୋଇ କିବା ପଞ୍ଚଶର ଗୋ
ମଧୁ ମାସେ କଲା ବୃଷ୍ଟି
ତହୁଁ ସୁବାସିତ ନୀର ବୃଷ୍ଟି ଗୋ ।୫।
ପ୍ରବଳା ଅବଳା ଶ୍ରୀଚରଣେ ବଳା
ନିସ୍ୱନ କି ଘଡ଼ଘଡି ଗୋ
ଅଧରେ ମଧୁର ହାସ ତାହାଙ୍କର
ବିଜୁଳି ସମାନ ଜଣି ଗୋ
ଭୁରୁ ଇନ୍ଦ୍ର ଧନୁ ପରି
ଆହା ଦିଶୁଛି କେସନ ଶୋଭି ଗୋ ।୬।
କାନନର ତରୁ- ଲତା ସର୍ବେ ଗୁରୁ
ହେଲେ ଲଭି ଫଗୁ ରଙ୍ଗ ହେ

ଉନ୍ମତ୍ତରେ ନୃତ୍ୟ      କରି ନାରୀ ଯୂଥ
ପରସ୍ପର ହୋଇ ସଙ୍ଗ ହେ
ରହୁଁ ହେଲେ ଫିଙ୍ଗା ଫିଙ୍ଗି
ପରିହାସ ହୋଇ ନାନା ଭଙ୍ଗି ହେ ।୭।

ସୀତା ରାମଙ୍କର      ଖେଳ କି ସୁନ୍ଦର
ପରସ୍ପର ନାନା ରସ ହେ
ଫଗୁ ମରାମରି      କର ଧରାଧରି
ଛଳ ଭାଷା ଶ୍ଳେଷ ଭଙ୍ଗ ହେ
ରଙ୍ଗାଧର ସଙ୍ଗାତରେ
ବୋଲି ଫିଙ୍ଗନ୍ତି ସୀତାଙ୍କ ଉପରେ ହେ ।୮।

ଭରି ଅନୁରାଗ      କୁସୁମ ପରାଗ
ସଙ୍ଗତେ ଅବୀର ରଜ ହେ
ଭାସ୍କର ପ୍ରକାର      ଫିଙ୍ଗୁ ଧୀର ଧୀର
ଧନୀ ହୋଇ ଲଜ ଲଜ ହେ
ରସରଙ୍ଗେ କୋଳ କରି
ବୋଲେ ଅସ ଅସ ସହଚରି ଗୋ ।୯।

ବାହୁ ପାଶେ ବାନ୍ଧି      ରଖିଲି ମୁଁ ଛନ୍ଦି
କେ ଫିଙ୍ଗିବ ଫିଙ୍ଗ ଅସ ଗୋ
ସୀତା ବାଣୀ ଶୁଣି      ଘେରିଲେ ରମଣୀ
ମଧ୍ୟେ ରଘୁକୁଳ ଈଶ ଗୋ
କେହୁ ଫିଙ୍ଗେ ଫଗୁରାଶି
କେବା ପିଚକା ମାରନ୍ତି ହସି ଗୋ ।୧୦।

ପ୍ରେମେ ମତୁଆଳି      ହେଲେ ସର୍ବ ଆଳୀ
କେନ୍ତ କେଳି ବଢନ୍ତି ଲୀଳା ହେ

ମୋହନ ମୂରତି ସେହି କାଳ ଗତି
ଭାବ ନୀଳମତି ହୋଇଲା ହେ
ଛବିଧର ଦୟା ହେଉ
ଜୀବ ତୋହ ହାତେ ଲଭି ଯାଉ ହେ ।୧୧।

ପୟାର

ମଧୁଅଳ ଫଗୁ ଖେଳ କରେ ରସରାଜ
ପ୍ରେମ ମାତେ ପ୍ରଭୁ ସାଥେ ସୁଲକ୍ଷଣୀ ବ୍ରଜ ହେ ।୧
ଲତା ତରୁ ଅତି ଶୁରୁ ଅରୁଣ ବରନ
ଶୁକ ସାରି ଯେ ମୟୂରୀ ମୟୂର ସଗଣ ହେ ।୨
ଏପରେ ଗୃହିଁ ତେଣେ ସହ ଫଗୁରଜ ଉଡ଼େ
ବନ ସାରା ଗୋ ଗନ୍ଧର୍ବ ସ୍ଥାନେ ସ୍ଥାନେ ଜଡ଼େ ଗୋ ।୩
ସେ ଉଦ୍ଧନ୍ତ ଯେ ବ୍ରହ୍ମାଣ୍ଡ-ପାଳକ ଗହଣେ
ନାରାୟଣ, ନୀଳ ଧ୍ୟାନ ସେହି ଶ୍ରୀଚରଣେ ହେ ।

ଚତୁଷ୍ପଦୀ

ଅବିରାଗ ରମଣୀ ରାମ ସଙ୍ଗେ ମାତିଲେ
ଚର୍ଚ୍ଚିଥି ଅଚର ସହଚରୀଗଣ ସାଥିରେ ।୦।
ତରୁଣୀ ଅରୁଣୀ ବର୍ଣ୍ଣ ସରଣୀ ହେଲା ସମାନ
ସରଳ ହୃଦୟା ତରଳାକ୍ଷୀ ପ୍ରେମ ମତିରେ ।୧।
ଅନୁରାଗରେ ପରାଗ- ରାଗରେ ଯେ ମହାଭାଗ
ବେଗ ବେଗରେ ଅବୀର ରଜ ପଡ଼େ କ୍ଷିତିରେ ।୨।
ଚଳନ ମଳୟ ବାତ ସଙ୍ଗେ ଫଗୁରଜ ବ୍ରାତ
ପଶୀର ପିଚକା ନୀର ମାରନ୍ତି ସେ ଅତିରେ ।୩।

ଶ୍ୟାମ ତନୁ ଦଶେ ରଙ୍ଗ ତପାଳ କେଶୀଙ୍କ ସଙ୍ଗ
ରଙ୍ଗରେ ମିଶେ ସୁରଙ୍ଗ ଅହା କ ପାରତରେ ।୪।
ବଢ଼େ କଉତୁକ ଅତ ପତ ସଙ୍ଗେ ତ ଯୁବତୀ
ବତୀଶ ଲକ୍ଷଣୀ ପଦ ନୀଳ ଚନ୍ଦ୍ରା ନଭରେ ।୫।

ଶ୍ଳୋକଃ

**ଦିବ୍ୟ ଭାବ ଯୁତା ସୀତା ଦିବ୍ୟ ଭାବ ମୟୋ ହରିଃ**
**ରମଣ୍ୟଃ କ୍ରୀଡୟାମାସୁ ର୍ଦିବ୍ୟ ଭାବୋଜ୍ଜ୍ୱଳାଶୟା ।୮।**

ପୟାର

ଦେଖ ସୀତା ଗୁଣଯୁତା ଅପ୍ରେମମୟ ମୂର୍ତ୍ତି
ଦିବ୍ୟ ଭାବ ସେ ରାଘବ ଅପ୍ରାକୃତ ଅତ ହେ ।୧।
ସୀତା ରମା ସୁମଧ୍ୟମା ଶ୍ରୀରାମ ଶ୍ରୀଧର
ସୀତା ଉମା ଅନୁପମା ରାମ ତ୍ରିପୁରାରି ହେ ।୨।
ସୁଲକ୍ଷଣୀ ଯେ ରୋହିଣୀ ରାଘବ ଶଶାଙ୍କ
ସଂଯମନୀ ସୀତାରାଣୀ ରାମ କୃତାନ୍ତକ ହେ ।୩।
ସଦାଗତ ହେମ ଗାତ୍ରୀ ରାଘବ ଅନଳ
ସ୍ୱାହା ଦ୍ରୁତ ନାରୀଗଣ ଶ୍ରୀରାମ ଅନଳ ହେ ।୪।
ସୀତା ପ୍ରଭା ରାମ ଅବା ଭାସ୍କର ସମାନ
ସରସ୍ୱତୀ ସୀତା ସତୀ ପ୍ରଭୁ ପଦ୍ମାସନ ହେ ।୫।
ନାରୀଗଣ ଅନୁଅନ ପ୍ରେମମୟୀ ମୂର୍ତ୍ତି
ଦିବ୍ୟ ଭାବେ ପୁଣି ସର୍ବେ ହୋଇଛନ୍ତି ସ୍ଥିତ ହେ ।୬।
ସେହି ଭାବେ ଦେବ ସର୍ବେ ହେଲେ ମୋହମାନ
କରଯୋଡ଼ି ସ୍ତୁତି ପଢ଼ି କରନ୍ତି ସ୍ତବନ ହେ ।୭।
ଜୟ ଦିବ୍ୟମୟ ଦେବ ଜୟ ଦିବ୍ୟମୟୀ
ଦିବ୍ୟ ଭାବେ ସେ ରାଘବେ ନୀଳକଣ୍ଠ ଧ୍ୟାୟି ହେ ।୮।

ଶ୍ଳୋକଃ

**ଏହି ଚନ୍ଦ୍ରମୁଖି ସୀତେ ! ମଞ୍ଜୁଳଂ କୁଞ୍ଜ-କାନନଂ**
**ଶ୍ରମାପନୋଦନାୟେତି କଥୟାମାସ ରାଘବଃ ।୧**

ପଦ୍ୟାର

କ୍ରୀଡ଼ା ଅନ୍ତେ ମୋଦଚିତ୍ତେ ବୋଲେ ରଘୁପତି
ଶୁଣ ଧନ ମୋ ଜୀବନ ପରାଣ ପିରତି ଗୋ ।୧।
ଖେଳ ରସେ ସର୍ବେ ତୋଷେ ହୋଇବାରୁ ଭୋଳ
ସ୍ୱେଦ ବିନ୍ଦୁ ଅଗୋ ଇନ୍ଦୁମୁଖି ! ପଡ଼େ ତଳ ଗୋ ।୨
ବିଶ୍ରାମକୁ ଏ କୁଞ୍ଜକୁ ସର୍ବେ ଧୀରେ ଆସ
ଶୁଣି ବାଣୀ ସେ ରମଣୀ ସର୍ବେ ହସ ହସ ହେ ।୩
ମଧ୍ୟେ ରାମ ଗୁଣଧାମ ବାମେ ବିଜେ ସୀତା
ତାଙ୍କୁ ଘେରି ରସାକୁଳା ସକଳ ବନିତା ହେ ।୪
କି ସୁନ୍ଦର ଶୋଭା ସାର ହେଲା ଅସି ଠୁଳ
ନିତି ନିତି ସୀତାପତି ପଦ ଚିନ୍ତେ ନୀଳ ହେ ।୫।

ଶ୍ଳୋକଃ

**ଦୂର୍ବାଦଲ-ଶ୍ୟାମ-ତନୁଂ ମହାର୍ହ**
**କୀରୀଟ ରତ୍ନାଭରଣା-ଚିତାଙ୍ଗମ୍**
**ଆରକ୍ତ-କଞ୍ଜାୟତ-ଲୋଚନାନ୍ତଂ**
**ଦୃଷ୍ଟ୍ୱାୟୟୁର୍ମୋଦମତୀବ ବାମା**

ପଦ୍ୟାର

ନାରୀଗଣ ମୋହମାନ ଦେଖି ସେହି ଶୋଭା
ଯୋଡ଼ିକର ନତପର ସର୍ବେ ହେଲେ ଉଭା ହେ ।୧।

ସୂବନ୍ଧ କର ଅତି ମୋଦେ କଲେ ସ୍ତୁତି
ଦୂର୍ବାଦଳ ସମ ନୀଳ ବପୁ ରଘୁପତି ହେ ।୨।
ମୁକ୍ତାହାର ଝଟ ଝଟ ରତ୍ନ-ଆଭରଣ
ସର୍ବାଙ୍ଗରେ ଶୋଭା କରେ ଶ୍ରୀଅଙ୍ଗ ଚନ୍ଦନ ହେ ।୩।
କି ଅରୁଣ ପଦ୍ମସମ ଲୋଚନ-ବିଶାଳ
ସୁପୀବର ବକ୍ଷସ୍ଥଳ ଗଳେ ମୁକ୍ତାମାଳ ହେ ।୪।
ସୂର୍ଯ୍ୟ ସମ ଜ୍ୟୋତି ତମ-ଅଜ୍ଞାନ ବିନାଶେ
କଳ୍ପତରୁ ପୁଷ୍ପ ଗୁଚ୍ଛ ମାଳ ଗଳ ଦେଶେ ହେ ।୫।
କସ୍ତୁରିକାରେ ଅଧିକା ଚନ୍ଦନର ଛଟା
ରାମାନନ୍ଦୀ କରେ ବନ୍ଦୀ କୁଳବତୀ ବ୍ରତ ହେ ।୬।
ହେ କିଶୋର ଦୟାକର ଆମ୍ଭେ ତୋର ଦାସୀ
ନୀଳ ଭାଷେ ତୋହ ରସେ ଯାଉଁ ପ୍ରେମେ ଭାସି ହେ ୭।

ଶ୍ଳୋକଃ

**ପ୍ରେମାର୍ଦ୍ର-ହୃଦୟୋ ରାମ ଉବାଚ ସୁନ୍ଦରୀଃ ପ୍ରତି**
**ମଦ୍ଭକ୍ତି-ହୃଦୟାଃ ସର୍ବା ଅନ୍ତେ ସାୟୁଜ୍ୟ ମାପ୍ନୁୟୁଃ ।୧୧।**

ପୟାର

ବୋଲେ ବାଣୀ ରଘୁମଣି ପ୍ରେମେ ବହ୍ୱଳିତ
ହେଲ ପ୍ରୀତ ଅଗୋ ମିତ ଶୁଣି ସ୍ତୁତ ଗୀତ ହେ ।୧।
ସଦାକାଳେ ପଦତଳେ ଥିବ ଗୋ ଭକତ
ଯୁଗେ ଯୁଗେ ମୋର ଭାବେ ମଜ୍ଜିବ ସୁଦନ୍ତ ଗୋ ।୨।
ଦେହ ଅନ୍ତେ ପଦାଗ୍ରତେ ଲଭିବଟି ସ୍ଥାନ
ଏ ଅଭୟ ଅନୁଗ୍ରହ କର ତୋଷେ ଦାନ ଗୋ ।୩।

ଏହାଶୁଣି ସେ ରମଣୀ ଗଣେ ତୋଷ ମତ
ନୀଳଚନ୍ଦ୍ରା କରେ ସୀତା ପତି ଧବା ରୀତ ଗୋ ।୪।

ଶ୍ଳୋକଃ

**ତତଃ ସା କଥୟାମାସ ଜାନକୀ ରନ୍ତ୍ରଭୂଷଣା**
**ଜଳକ୍ରୀଡ଼ାର୍ଥମାଗଚ୍ଛ ସରଯୂଂ ପ୍ରାଣବଲ୍ଲଭ ।୧୨।**

ଯଥାରାଗ

ବୋଲେ ଧୀରେ ବାଣୀ          ରତନ ଭୂଷଣୀ—
ଜାନକୀ ରଘୁପତିଙ୍କି
ତନୁ ଫଗ୍ର ରଙ୍ଗେ          ସ୍ନେହିତ ସହଜେ
ଗୃହ ସରଯୂ ପାଣିକି ହେ
ଜଳକ୍ରୀଡ଼ା ଅଶେ ଧନ
ଶୁଣି ସର୍ବେ ହେଲେ ତୋଷ ମନ ହେ ।୧।
କଳ କଳ ରବେ          ଝର ଝର ଭାବେ
ବହେ ସୁମନ୍ଦ ଗାମିନୀ
ତରଙ୍ଗର ତାନ          କରେ ମୃଦୁଗାନ
କିବା ସରଯୂ ତଟିନୀ ହେ
ଗୀତ କର ତୋଳି ଡ଼ାକେ
ଅସ ରସରାଜ ମୋହ ପାଶେ ହେ ।୨।
ତରଙ୍ଗର ଭଙ୍ଗ          କିବା ପଦ୍ମ ସଙ୍ଗ
ଲଭିବା ଛଳନା ତାର ହେ
ମନ୍ଦ ମନ୍ଦ ହାସେ          ପ୍ରବାହିନୀ ପାଶେ
ଭଜେ ରଘୁକୁଳ ବୀର ହେ

କରେ ସୀତା କର ଧରି
ଘେରି ରହିଛନ୍ତି ବାମାଙ୍ଗୀ ହେ ।ଘୋ।

ଶ୍ଲୋକଃ

**ଗତ୍ୱାଚ ରାମାଃ ସରଯୂଂ ତତସ୍ତାଃ**
**ଶ୍ରୀରାମ-ସୀତା-ସହିତା ଜଳେଽସ୍ୟାଃ**
**ଅନେକ ବୈଚିତ୍ର୍ୟ ସମାକୁଳେହି**
**କ୍ରୀଡାରସେ ମୋଦ-ମନା ବଭୂବୁଃ ।**

ଯଥା ରାଗ

କର ଧରି ଧରି    ସୀତା ରୂପଧାରୀ
ସର୍ବ ନାରୀ ରୂର ପାଶେ ହେ
ପ୍ରବେଶିଲେ ଜଳେ    ପ୍ରେମ କୋଳାହଳେ
ପ୍ରକଟେ କମଳ ବାସ ହେ
ନୀଳୋତ୍ପଳ ତହିଁ ଫୁଟେ
ମକରନ୍ଦ ପାନେ ଅଳି ଜୁଟେ ହେ ।୧।
ନାରୀ ବାରି ବାରି    ନୁହଇ ଏପରି
ନେତ୍ର-ମୀନ-ସ୍ତନ-ଚକ୍ର
ସେ ହାସ-କୁମୁଦ    ପ୍ରକାଶିଲା ମୋଦ
ଶ୍ରୀମୁଖ-କମଳ ତର୍କ ହେ
ବାଳ ଶୈବାଳ ପରି
ପୃଥୁ-ଜଘନ ପୁଳିନ ସରି ହେ ।୨।
ନୀର ଫଙ୍ଗା ଫିଙ୍ଗି    ତନୁ ଭଙ୍ଗା ଭଙ୍ଗି
ବୁଡି କେ ଧରେ କା ପାଦ ହେ

ନକ୍ର ବୋଲି ବକ୍ର ଚଞ୍ଚୁନେ ଅନାଇଁ
କେ ବୋଲେ ହେଲା ବିପଦ ହେ
ଚକ୍ରଧାରୀ ସଙ୍ଗେ ଛନ୍ତି
ନକ୍ର ଦଶା କି କରିବ ଏଥି ଗୋ ।୩।
ବୋଲେ କେ ସଙ୍ଗୀତ କରଣ ଭଙ୍ଗୀ ତ
ଇଙ୍ଗିତ ବଚନେ ଗୃହ୍ନିଁ ହେ
କମଳ କଳିକା କେ ଅଣି ତୋଳିକା
ସନ୍ଧିକ ଛଳାର କନ୍ଧ୍ର ହେ
ଏନ୍ଧ୍ର ଭଳିକା ଗୋ ଧନ
ଚଳ ନୁହ, ତୋର ସ୍ତନମାନ ଗୋ ।୪।
ଅଭିମାନେ ହାରେ କଲୁ ଅଣି ବେଗେ
ଫିଙ୍ଗିଲ କେଉଁ ଶୋଭାଙ୍ଗୀ ହେ
ଭଙ୍ଗୀରେ କେ ନୀଳ— ଉତ୍ପଳ ଯୁଗଳ
ସୀତାରାମେ ଅନୁରାଗୀ ହେ
କରେ ଦେଲା ତର ତର
ଯୁଗଳର ହଂସ ଦର ଦର ହେ ।୫।
ଭାସୁ କାର ସ୍ତନ କେ ବୋଲଇ ଧନ
ଭୂଧରେ ବାନ୍ଧୁକି ବାର ଗୋ
ପିଠୀଭ କବରୀ କେ ବୋଲେ ଏପରି
ଏତ କଳାଫଣୀ ପରି ଗୋ
ଏଣୀ ନେତ୍ରୀ ଘୁଞ୍ଚିପଲା
ନାସା ସୁପର୍ଣ୍ଣ ଅଛିତ ବାଳା ଗୋ ।୬।
ସାରି ଜଳ କ୍ରୀଡ଼ା ତେଜି ମନୁଁ ବ୍ରୀଡ଼ା
ସର୍ବେ ତୀର ଦେଶେ ଉଭା ହେ

ପିନ୍ଧି ଅଭରଣ　　　　ଯେ ଯାହା ବସନ
ରାମ ଗୁରୁ ପାଶେ ଶୋଭୁ ହେ
ନଟବର ରଘୁନାଥ
ସ୍କନ୍ଦଦଳରେ ଧରି ସୀତା ହାତ ହେ ।୭।
କାନନେ ବିହାରି　　　　ଯାଇଁ ଅଗଭୀର
ନାଚିକି ଚଳନ୍ତି ଧୀରେ ହେ
ସେହି କାଳ ଗତ　　　　ସେ କାଳ ମୂରଛି
ମନେ ଭାବି ନିରନ୍ତର ହେ
ନୀଳକଣ୍ଠ ଶିବ ତରି
ରାମ ଭାବ ସତେ ଅନୁସରି ହେ ।୮।

ଶ୍ଳୋକଃ

**ପୌଷେମାସି ସିତେପକ୍ଷେ ମନ୍ଦେ ବାସରେ ନାୟକେ**
**ପଞ୍ଚମଶ୍ଚାୟମୁଲ୍ଲାସ ରାମସ୍ୟ ବିଗତ ଶୁଭମ୍**

ପୟାର

ହେ ବାବୁଷ ଏଥି ଶେଷ ଏହି ଦିବ୍ୟ ବାଣୀ
ଶୁକ୍ଳପକ୍ଷ ତଥିଦକ୍ଷ ମାସ ପୌଷ ଜାଣି ହେ ।୧।
ନାମ ବାର ଶନୈଶ୍ଚର ସୁଧାମୟ ବେଳା
ଚନ୍ଦ୍ର ନିତ ରଘୁପତି ଦଶରଥ ବାଳା ହେ ।୨।
କରେ ଶେଷ ଏ ଉଲ୍ଲାସ ପରମ-ସନ୍ଦର୍ଭ
ରତ୍ନାକର ରଘୁବର ମୂର୍ତ୍ତି ରସାନନ୍ଦ ହେ ।୩।
ଅହେ ସାଧୁ ନିଷ୍କୁଳଙ୍କ ଜ୍ଞାନମୟ ଜନେ
ମୁଁ ଶରଣ ନିଶିଦିନ ତୁମ୍ଭ ଶ୍ରୀଚରଣେ ହେ ।୪।

କବିବର ପୀତାମ୍ବର ଜୟଦେବଙ୍କର
ପଦାତଳେ କୁତୂହଳେ ହେଉଚ୍ଛି କିଙ୍କର ହେ ।୫।
କୃପାମୟୂ ରଘୁରାୟୂ ଶ୍ରୀମତୀ ଜାନକୀ
ପଦସେବା ବିନା ଅବା କେ ମୋର ଆନକି ହେ ।୬।
ପିତା ମାତା ଆଉ ଚିନ୍ତା ମୋର ଅଉ କିସ
ମକରନ୍ଦ ପାନେ ଅଳି ନୀଳକଣ୍ଠ ଦାସ ହେ ।୭।

ଇତି ଶ୍ରୀ ହରଗୌରୀ ସଂବାଦେ ଶ୍ରୀରାମ ବାସନ୍ତିକ ରାସ ବର୍ଣ୍ଣନେ
ମୋହନ ମାଦକୋ ନାମ ପଞ୍ଚମ ଉଲ୍ଲାସଃ ।

# ଷଷ୍ଠ ଉଲ୍ଲାସ

ଶ୍ଲୋକ

**ଷଷ୍ଠେ ବନ-ବିହାରାନ୍ତେ ନିକୁଞ୍ଜ-ମଣି-ମଣ୍ଡପେ**
**ଅକ୍ଷକ୍ରୀଡା ସମାରବ୍ଧା ସୀତା ରାଘବୟୋଃରପି ।୧।**

ପୟାର

ଏ ଉଲ୍ଲାସର ରହସ୍ୟ ଶୁଣ ସାଧୁଜନ
କାନନରେ ସୁମନରେ ବିହାର ବିଧାନ ହେ ।୧।
କରୁ କରୁ ପ୍ରଭୁ ଗ୍ରହୁ ନିକୁଞ୍ଜ ମଣ୍ଡପ
ଦରଶନେ ମୋଦମନେ ବିଶ୍ରାମି ଅଳପ ହେ ।୨।
ଅକ୍ଷକ୍ରୀଡ଼ା ଚେଳ କ୍ରୀଡ଼ା ସୀତା ସଙ୍ଗେ କରି
କରି ପଣ ଅନୁ ଅନ ସକଳହିଁ ହାରି ହେ ।୩।
ପରିଶେଷେ ସୀତା ବସେ ପିନ୍ଧି ରାଜବେଶ
ପନ୍ଥୁଅରେ ଆନନ୍ଦରେ ନାରୀପଣ ବଂଶ ହେ ।୪।
କନ୍ଦୁଅଳ ରଘୁବାଳ ହୋଇ ବାହାରବେ
ଏ ଉଲ୍ଲାସ ସାଧୁ ତୋଷ କରେମୀଳ ଭବେ ହେ ।୫।

ଶ୍ଲୋକ

**କିୟଦ୍ଦୂରଂ ଗତ୍ୱା ରାମୋ ଦଦର୍ଶ ମଣି ମଣ୍ଡପଂ**
**ନାନାରତ୍ନୈର୍ବିତାନୈସ୍ତୁ ଶୋଭନୈଶ୍ଚାତି-ସୁନ୍ଦରମ୍ ।୨।**

ପୟାର

ନାରୀ ସଙ୍ଗେ କଥାରଙ୍ଗେ ଯାଇ କିଛି ଦୂର
ଦେଖେ ରାମ ଗୁଣଧାମ ମଣ୍ଡପ-ରୁଚିର ହେ ।୧।

ତାର ଓର କେତେ ତୋଷ ପ୍ରବାଳେ ନିର୍ମିତ
ଶେଣୀକମ ଅନୁପମ ଦ୍ରବ୍ୟ ମକରତ ହେ ।୨।
କେବା ଖଞ୍ଜି ପୁଞ୍ଜି ପୁଞ୍ଜି ମାଣିକ୍ୟ ମାଳିକା
ରଙ୍ଗପାଟରେ ପ୍ରକଟ ଗ୍ରନ୍ଥି ପ୍ରେମାଧିକା ଗୋ ।୩।
ମାଣିକ୍ୟର ମନୋହର ମାଗ୍ରଗ ମହୁଡ଼
ଭିତ୍ତିପରେ ଦର୍ପଣରେ ଖଞ୍ଜିତ ନିବାଡ଼ ଗୋ ।୪।
କଶସୂତ୍ର ଚେତପଦ ଚ୍ଛୁଆଣି ଉପରେ
ମୋତି ଚନ୍ଦ୍ରାତପ ବନ୍ଧା ଅଛୁ ତଥି ପରେ ହେ ।୫।
ଭଲ ଭଲ ଦୀପାବଳୀ ଜଳେ ଚତୁର୍ଦ୍ଦିଶ
ନାନାଶନରେ ବଶନ ଚାରଭିତ୍ତି ଦେଶ ହେ ।୬।
ଫୁଲଶେଯ ହୋଇ ସଜ ରତନ ପଲଙ୍କ
ଉପାଧାନ ସୁଯତନ ରତନ କରଙ୍କ ହେ ।୭।
ପିକଦାଣୀମାନ ଧନ୍ୟ ! ତାହା ପାଶେ ସ୍ଥିତ
ସୁପର୍ଣ୍ଣର ଯେ ଅତର ଗୃମର ସହିତ ଗୋ ।୮।
କେବା କହୁ ପାଟର ସହୁ ତାର ଆଡ଼ମ୍ବର
ଯହିଁ ବଜେ ଦେବବାଜେ ସୀତା ସଙ୍ଗତର ହେ ।୯।
ସଖିଗଣ ଅନୁଆନ ଚତୁର୍ଦ୍ଦିଶେ ଘେର
ବୋଲେ ମିଳ ରଘୁବାଳ ସୁଖେ ସମ୍ଭାକର ହେ ।୧୦।

ଶ୍ଳୋକଃ

**ତତୋ ଯୋଗେଶ୍ୱରୋ ରାମ ବଦତି ଜାନକୀଂ ପ୍ରତି**
**ଅଷ୍ଟଲୀଲାଂ ଭୂୟଃପାର୍ଦ୍ଧଂ କରିଷ୍ୟାମୀତି ମେ ମନଃ ।୩।**

ପୟାର

ହସି ଭାଷେ ସୀତା ପାଶେ ରଘୁକୁଳମଣି
ମୋ ବଚନ ଶୁଣ ଧନ ଜନକ–ଦୁଲଣୀ ଗୋ ।୧।

ମନୋହର ଋତୁସାର ଏ ନବ ବସନ୍ତ
ତୁମ୍ଭ ସଙ୍ଗେ କଥା ରଙ୍ଗେ ବିହାର ଯାବତ ଗୋ ।୨।
ଏବେ ମନ ମୋ ପ୍ରସନ୍ନ ଅଛ ଗୋ ସୁନ୍ଦରୀ !
ପଶାଖେଳ ଯୋଷାମେଳ ଧର କୃଶୋଦରୀ ଗୋ ।୩।
ଏ କାଳକୁ ସେ ଶତ୍ରୁକୁ କରିବ ପ୍ରମୋଦ
ମୀନ ଭଣି ବାଣୀ ଶୁଣି ଧନୀ ପ୍ରେମାନନ୍ଦ ହେ ।୪।

ଯଥାରାଗ

ଚନ୍ଦ୍ର ମୁଖୀ ପଦ୍ମ— ମାଳା କୃଶୋଦରୀ
ଭଙ୍ଗିମା–ବଚନ କହେ ହେ
ହେ ରସ ସାଗର ନବୀନ ନାଗର
କେ ଅନୁରାଗ ହୁଏ ହେ
ତୁମ୍ଭେ କପଟ ଚତୁର
ନଟବର ମଦନ ସୁନ୍ଦର ହେ ।୧।
ବଳବନ୍ତ ପଣ କେ ସହିବ ପୁଣ
ଖେଳେ ଅଛି ନାନାକଥା ହେ
ପଛରେ ନମାନ ରଘୁକୁଳ ମଣି
ଆମ୍ଭଙ୍କ ମନ୍ଥାଅ ବୃଥା ହେ
ଧନୀ ଲଭିବ କଷଣ
ରାଜସୁତା ସୁକୁମାରୀ ଜାଣ ହେ ।୨।
ଖେଳର ଯେ ରୀତି ଅମ୍ଭେ ନାରୀ ଜାତି
ନଜାଣୁ ତ ତାହା କିଛି ହେ
ଏଥିକୁ କେ ସାକ୍ଷ କହ ନଳୀନାକ୍ଷ
ମିଛେ ଭୁଲନା ହେଉଛି ହେ

ରଖ ରଖ ସେ ଗୃହ୍ଧୁସ୍ତି
କେତେ ବେଲାଉଛ ଗୃପଧାର ! ହେ ।୩।

ମନମାୟା ଭାଷେ                ମନ୍ଦ ମନ୍ଦ ହାସେ
ଋଚସେଣ୍ବର ଅରେ ଶୁଣ ହେ

ପଣ ଖେଳେ ଫାଡ଼                ନାଗର ମଉଡ଼
କୋହ୍ଲେ କ ଭଲ ଜାଣ ହେ

ପ୍ରତପକ୍ଷ କେବା ହେବ
କହ କେ ଏଥି ସାର ବାହ୍ଵବ ହେ ।୪।

ରମଣୀଙ୍କ ବାଣୀ                ଶୁଣି ରଘୁମଣି
କହୁ ତହୁଁ ଧୀର ଧୀର ହେ

ଚତୁସ୍ତ୍ରୀ ଏ ମୋତେ                କହୁଛ ଯୁକତେ
କିବା ମୁଁ ଦୋଷୀ ତୁମ୍ଭର ଗୋ

ରସାଳସି ପିକଭାଷି !
କାମ କଳ୍ପ ଲତା ଗୃହୁହାସି ଗୋ ! ।୫।

ଧର୍ମ ଏକ ପକ୍ଷ                ମୁଁ ତାଙ୍କ ବିପକ୍ଷ
ସାକ୍ଷୀ ଏଥି ଲୀଳାବତୀ ଗୋ

ମନମାୟା ମୋର                ବାହୁଦେବ ସାର
ଜାନକୀର ଏ ବାସନ୍ତୀ ଗୋ

ତୁମ୍ଭେ ସର୍ବେ ସୀତାସଙ୍ଗୀ
କେତେ କରୁଛ ସଙ୍ଗିନୀ ଭଙ୍ଗୀ ଗୋ ।୬।

ସୁବର୍ଗୁର ପାଇଁ                ମାନୁଛୁ ମୁଁ ସହି
ଲୀଳାବତୀ ହେବ ସିନା ହେ

ହୁଅପାହା ପକ୍ଷ                ସର୍ବେ, ମୁଁ ବିପକ୍ଷ
ମୋର ଜନକ ନନ୍ଦନା ଗୋ

ଅଣ ଅଣ ପଶା ସାର
ପାଲ୍ ପାଡବା ଏ ପଲଙ୍କର ଗୋ ।୭।
ଠାକୁରଙ୍କ ମନ ଜାଣି ନାରୀଗଣ
ପଶା ପାଲ୍ ଆଣି ଖଟରେ ହେ
ମନମାୟା କହ କବା ଦୁଇ ହୋଇ
ରଖିବ ପ୍ରଥମ ବାରେ ଗୋ
ହସି ଜାନକୀ କହନ୍ତି
ମୋତ ସୀମନ୍ତ ମୋ ରସବତ ଗୋ ! ।୮।
ଲୀଳାବତୀ ବୋଲେ ତା ନୁହଇ ଭଲେ
ପଣ କରନ୍ତୁ ନାଗର ଗୋ
କାହିଁ ତର ତର ହେଉଛ ଗୋ ହର
ଯୋଗଭଙ୍ଗୀ ନାରୀବର ଗୋ
ଖେଳିବାକୁ ତାଙ୍କଆଶା
କେଉଁ ପୀଢ଼ କହନ୍ତୁ ସହସା ଗୋ ।୯।
ଦୁର୍ଲଭ ବଲ୍ଲଭ ଏହ କାଳେ ସଭା
କମ୍ପାଇ କହିଲ ବାଣୀ ହେ
ହେ ନାଗରେବର ଏବୀଣା ତୁମ୍ଭର
ପ୍ରଥମରୁ ପୀଢ଼ ପୁଣିହେ
ଜାଣି ରଖହେ କିଶୋର
ମୋତ ସୀମନ୍ତ ଜାନକୀଙ୍କର ହେ ।୧୦।
ହସି ପ୍ରଭୁ କହ ଏ ନୁହଇ ସହ
ବୀଣା ସଙ୍ଗେ କି ସୀମନ୍ତ ଗୋ
ଲକ୍ଷେ କୋଟି ଚୁମ୍ବ ଦେବି ମୁଁ ପ୍ରଲମ୍ବ—
କୁନ୍ତଳା ହାରିଲେ ସତ ଗୋ

କୁଚ-ଶମ୍ଭୂ-ଶିରେ କର—
ଚମ୍ପା ଦେଇ ମୁକ୍ତିବ କାକର ଗୋ ।୧୧।
ସତ ସତ କହ                    ଅଛ ରଘୁସାଇଁ
ସୁନ୍ଦରୀଏ ଦେଲେ ତାଳି ହେ
ପାତ ପଶା ପାଲି                    ଦେଲେ ହୁଳହୁଳୀ
ହୀନ ନୀଳକଣ୍ଠ ଭଳି ହେ
ଦେବେ ପୁଷ୍ପ ବୃଷ୍ଟି କର
ଲୀଳା ଦେଖନ୍ତି ଶୂନ୍ୟେ ବହର ହେ ।୧୨।

## ପ୍ରଥମବାର ଖେଳ

### ପୟାର

ପାଲି ପାତ ରଙ୍ଗବତୀ ବାସନ୍ତିକା ଭଣେ
କେଉଁ ସାର ରଘୁବର ମାନସକୁ ଅସେ ହେ ।୧।
କେନ୍ଦ୍ର କର ଗୃପଧାରୀ ହଳଦୀ ପଶକ
ଧରୁକର ଅନ୍ୟସାର ନେଲେ ଶ୍ରୀମତୀକ ହେ ।୨।
ପାଲିପରେ ସବ୍ୟଧୂରେ ସାରକୁ ବଯାଇ
ସବୁ କାଠିକ ଏକାଠି ଧର ରଘୁସାଇଁ ହେ ।୩।
ଡ଼ାକ ଦେଇ ଯେ ଭୁହାଇ କାଠି ଦେଲେ ଗୁଡ
ପୁଅବାର ପଡ଼ୁସାର ମନମାୟା ଏଡ ହେ ।୪।
ଦଶୀ ଧରେ ଅନନ୍ଦରେ ପଡ଼ିଲା ସତର
ପ୍ରେମାଧିକା ବାସନ୍ତିକା ବାହେ ତର ତର ହେ ।୫।
ପୁଣି ଧରେ ଦାନ ପାରେ ଚଳେ ସାର ମାନ

କେତେବେ ଯୋଗ ହୁଏ ଯୁଗ ଦଶଇ ଶୋଭନ ହେ ।୬।
ବାସନ୍ତିକା ବୋଲେ ଏକା ଲଗିଛୁ ପନ୍ଦର
ମାର ଧନୀ ହେଉ ଗ୍ଲାନି ପ୍ରଭୁଙ୍କର ସାର ହେ ।୭।
କାଠି ଥାଙ୍କି ଶଶୀମୁଖୀ ଡାକି ଦେଲେ ଛୁଡ଼ି
ଅନା ଅନା ପ୍ରଭୁ କନା ପନ୍ଦରଟି ପଡ଼ି ହେ ।୮।
ଅଛୁ ଅଛୁ ହେଲ ବାଞ୍ଛା କହେ ପରିମଳା
ପ୍ରଭୁସାର ତତପର ମାରି ତାଳି ଦେଲା ହେ ।୯।
ପଡ଼େ ଦାନ ଯାତେ ପୁଣି ଧନୀଙ୍କର ସାର
ନୀଳ ଭ୍ରଷେ ଖେଳ ରସେ ଶ୍ରୀରାମର ହାର ହେ ।୧୦।

ଶ୍ଳୋକଃ

**ଗୁଣାରାମ ସ୍ତତୋ ରାମୋ ଜଗାଦ ଜନକାତ୍ମଜାଂ**
**ଉଦାସୀନା କଥଂ ମୃଦ୍ୱି ! ପୁନଃ କ୍ରୀଡାଂ ସମାଚର ।୪।**

ପୟାର

ବୋଲେ ରାମ ଗୁଣଧାମ ପ୍ରଭୁ ଯୋଗେଶ୍ୱର
ଅଉ ବାର ହେଉ ଖେଳ ବିଜୟ ତୁମ୍ଭର ଗୋ ।୧।
କାହିଁପାଇଁ ଚନ୍ଦ୍ରମୁହିଁ ବସ ଅଭିମାନେ
ଧର କାଠିକି ଏକାଠି ଖେଳିବା ସୁମନେ ଗୋ ।୨।
ମୋର ପଣ ଅଟେ ଗୋ ଧନ ଅଙ୍ଗ ଅଳଂକାର
କୋଟି ଚୁମ୍ବ ଗୋ ପ୍ରଳମ୍ବ କୁନ୍ତଳା ତୁମ୍ଭର ଗୋ ।୩।
ପ୍ରେମାଧିକା ବାସନ୍ତିକା ପାଳି ପାଞ୍ଚ ଦିଏ
ତୁମ୍ଭସାର ରଘୁବୀର ମନମାୟୀ କହେ ହେ ।୪।
କାଳିରଙ୍ଗ ହେ ରଥାଙ୍ଗଧାରି ! ଧର ବେଗ
ଅନ୍ୟ ସାରେ ବେଗେ କରେ ଧନୀ ଅନୁରାଗ ହେ ।୫।

କାଠି ଧର ରସାତୁରୀ ମନରେ ହରଷ
ସ୍ମର ରାମ ଗୁଣଧାମ ନୀଳକଣ୍ଠ ତୋଷ ହେ । ୬ ।

## ଦ୍ୱିତୀୟବାର ଖେଳ

ଦୀର୍ଘ

ବନ୍ଧୋଷ୍ଠୀ ଧରଣି କାଠି  ଗଡ଼ାଇ ଦେଉ ଏକାଠି
ପଡ଼େ ପଞ୍ଚା ସ୍ଥିର ହୋଇ ଦାନ
ମନମାୟା ବୋଲେ ବାଣୀ  ଅଠରକୁ ରଘୁମଣି
ଛେକି ମାର ଧେନ ମୋ ବଚନ ହେ
ପ୍ରଭୁ ହେ
ଅଠରରେ ଡାକେ ବାରମ୍ବାର
କାଠି ଗଡ଼ୁ ପଡ଼ିଲା ସତର ହେ । ୧ ।
ସାର ଦେଲ ଗଳା ସାର  ବୋଲେ ତହୁଁ ରଘୁବୀର
କଞ୍ଚା ସାରେ ଏଡ଼େ କାହିଁ ସ୍ନେହ
ମାର କଚେ ପୁଅ ବାର  ବାସନ୍ତିକାର ଉତ୍ତର
କାଠି ଛାଡ଼େ ଧନୀ ଚଳେ ଦେହ ଗୋ
ସଖି ଗୋ
ମାର ମାର ପଡ଼ିଅଛି ଦାନ
କନ୍ଧ କେଣେ ଯିବ ରଘୁନାନ ହେ । ୨ ।
ରାମ କହେ ଚଦ ଭଣ୍ଡି  କେବେ ଦେବା ନାହିଁ ଛାଡ଼ି
ଖଣ୍ଡ ହୋଇ ମାଡ଼ିବ ଏ ସାର
ଧନୀ ବୋଲଇ ଉତ୍ତର  କାହିଁ ହୁଅ ତର ତର
ବୃଥା ଯିବ ଶେଷେ ରଘୁବୀର ହେ

ମୋହନ

ଏଇ ଦେଖି ଯୁଗ ଯାଏ ଗୃହି
ପାଚିବ ମୁଁ ହେଲି ପାଶ ପାଲି ହେ । ୩ ।
ଚତୁର ! ରଖି ଗୃହର କେତେ ନକର ଖାନ୍ଧର
ଏଇ ବାର ସମ୍ଭାଳ ଏ ପଠ
କହିଲେ କି ହେବ ବଡ଼ ବାସନ୍ତିକା ବୋଲେ ଛାଡ଼
ଦେଖି ସାର ପାଚିବା ନିକଟ ହେ
ପ୍ରଭୁ ହେ
ଏହି କାଳେ ଧର୍ମୀ ଦାନ ପାର
ଶୋହଳ କହିଲି ଲୀଳା ଠାର । ୪ ।
ଜାନକୀର ପଡ଼େ ଦାନ କ୍ରମେ ଭଲ୍ଲ ସାର ମାନ
ପଛେ ପଡ଼ି ଗଲେ ରଘୁନାଥ
ଧର୍ମୀଙ୍କର ହେଲା ଜୟ ତାଳି ମାର ନାରୀଚୟ
କେବା ହସେ ମୁଖେ ଦେଇ ହାତ ହେ
ପ୍ରଭୁ ହେ
ଦଅ ଦଅ ଅଙ୍ଗ ଅଳଙ୍କାର
ନୀଳ ଭୂଷେ ମୁଁ ତୋ ପଦଗୃହ ହେ । ୫ ।

ତଥା ରାଗ

ଛାଡ଼ ଅନୁରାଗ ବାସନ୍ତିକା ବେଗ
ବସନ୍ତ ପତାକା ଧାଗ ବେହ
ପ୍ରଭୁ ଶିର ପରୁ ଘେନିଗଲା ଖୁରୁ
ଲୀଳାବତୀ ଅତି ବେଗ ହେ
ନେଲା ମକର କୁଣ୍ଡଳ
କାରବଲ୍ଲୀ କର ସଙ୍ଗ ଫୁଲ ହେ ।୧।

ନାନା ମଣି ମାଳୀ ପରିମଳା ବାଳୀ
ଗଳାରୁ ସେ ବଳେ କାଢ଼ି ହେ
ଅଙ୍ଗୁଷ୍ଠି ମୁଦ୍ରିକା ମଦନା ରସିକା
ଧଇଲା ଖରେ ସଜାଡ଼ି ହେ
କଟି ମେଖଳା କଙ୍କିଣୀ
କାମକଳା ପ୍ରେମ-ସୁହାସିନୀ ହେ । ୨ ।
ରତ୍ନ ଓଢ଼ଅଣୀ ଖଟେ କାଢ଼ି ଅଣି
ଧରିଲା କରେ ସୁଶୀଳା ହେ
ସେ ଭିଡ଼ା ବଦାସଡ଼ା ପ୍ରଭୁ ଅଙ୍ଗୁ ଛଡ଼ା
ବୋଲି କହଇ କେ ବାଳା ହେ
ଶୁଣି ଦୁର୍ଲଭ ଘେନଇ
ଦୁଃଖେ ଗୁହିଁଛନ୍ତି ରଘୁସାଇଁ ହେ । ୩ ।
ଅଙ୍ଗ ଅଳଙ୍କାର ଘେନି ଯେ ଯାହାର
ମନେ ହେଲେ ଅତି ତୋଷ ହେ
ନାସିକା ଉଡ଼ାଇ କେ କଥା କହଇ
କେବା ହୁଏ ହସ ହସ ହେ
ପ୍ରଭୁ ଅଙ୍ଗ ଶୋଭା ହୀନ
ନୀଳକଣ୍ଠ କରେ ନିବେଦନ ହେ । ୪ ।

ପୟାର

ମନମାୟା ବୋଲେ ବାୟା ହେଲ ସହଚରି
ଯାହା ତନୁକୁ ଅତନୁ ନୁହେ ସମ ସରି ଗୋ ।୧।
ତାହାଙ୍କର ଅଳଙ୍କାର ନେଇ ଏ କି ରୀତି
ଶୂନ୍ୟ ଦିଶେ ଅଙ୍ଗ କି ସେ ନସହେ ମୋ ଧୃତି ଗୋ ।୨।

ଅଣ ଅଣ ନାରୀଗଣ ଦିଅ ଅଳଙ୍କାର
ନୁହେ ଏହା ଗୋ ସୁଦେହା ଉତ୍ତମ ବଗୁର ଗୋ ।୩।
ସଖି ବାଣୀ ସୁଲକ୍ଷଣୀ ଜାନକୀ ଶୁଣିଲେ
ମନ୍ଦେ ହସି ପିକ ଭାଷୀ ସଧୀରେ ଭଣିଲେ ହେ ।୪।
ସତ୍ୟ ସତ୍ୟ ଏ କଥା ତ ଯା କହୁ ସଜନ ।
ଦିଅ ଦିଅ ରଘୁରାୟ ଅଳଙ୍କାର ଅଣି ଗୋ । ୫ ।
ଶୂନ୍ୟ ଅଙ୍ଗ କ ବାଭଙ୍ଗ ନସହେ ଅନ୍ତର
ଶୁଣି ବାଣୀ ସଖି ଶ୍ରେଣୀ ଅନନ୍ଦ ଅପାର ହେ ।୬।
ଧନ୍ୟ ବାକ୍ୟେ ସେ ଉତ୍ସୁକେ ଅଳଙ୍କାରମାନ
ପ୍ରଭୁ ଅଙ୍ଗେ ଦେଲେ ରଙ୍ଗେ ଯେବା ଯାହା ସ୍ଥାନ ହେ ।୭।
ଲୀଳାବତୀ ଭାବେ ଅତଶୟ ପ୍ରେମଭରେ
ସବୁ ହେଲା ବାଣା ଭଲ୍ଲ ନଦେବ୍ରୁ ଶ୍ରୀକରେ ହେ ।୮।
କୁଳବତୀ ବ୍ରତ ନତ କରେ ଏ ବନାଶ
ଛାଡ଼ ଅଶ ରଘୁଈଶ ବାଣା ଅମ୍ଭ ପାଶ ହେ । ୯ ।
ଏ ଭାରତୀ ସୀତାପତ ପୁଲକତ କରେ
ଦିଅ ନାହିଁ ବାଣା ସହେ ମୀଳ କହେ ଧୀରେ ହେ ।୧୦।

ଶ୍ଳୋକଃ

**ରାଘବୋ ଗୁଣଧାମାସୌ ଜଗାଦ ହୃଦୟେଶ୍ୱରୀଂ**
**ବାରମାତ୍ରଂ ମୟାସାର୍ଦ୍ଧମକ୍ଷ କ୍ରୀଡ଼ାଂ ପୁନଃ କୁରୁ ।୬**

ପୟାର

ପ୍ରଭୁ କହେ ଅଗୋ ପ୍ରିୟେ ଶୁଣ ମୋର ବାଣୀ
ଅଉ ବାରେ ମୋ ସଙ୍ଗରେ ଖେଳ ପ୍ରାଣ ମଣି ଗୋ ।୧।

ତନ୍ନ ଥରେ କାର୍ଯ୍ୟ ସରେ ଲୋକେ ଏହା ଜଣା
ବିଜେ କର ନାଗ୍ରିବର କଥା ହେଉ ଧେନା ଗୋ ।୨।
ବାସନ୍ତିକା ବୋଲେ ଦକା ନାହିଁ ରଘୁରାଜ
ଆଗବଳି କେତେ ଭଳି କହୁଅଛ ଆଜ ହେ । ୩ ।
ଦୁଇବାର ଖେଳ କର ହେଲ ପରାଜିତ
କେଉଁ ମୁଖେ ଏହା ସୁଖେ କହ ରଘୁସୁତ ହେ ।୪।
ପ୍ରଭୁ କହ ଅଗୋ ସହ କି ହେଲା ଅପାର
ତୁମ୍ଭର ତ ସୁନିଶ୍ଚିତ ଜୟ ଦୁଇବାର ଗୋ । ୫ ।
ଲୀଳା ବୋଲେ କହ ହେଲେ କି ମିଳିବ ଆଉ
କେଉଁ ପଣ ରଘୁରାଣ କହିବାର ହେଉ ହେ । ୬ ।
ପ୍ରଭୁ ଭାଷେ ଏଥି ରସେ ଯାର ହେବ ଜୟ
ସେ ରାଜନ ହେବ ଜାଣ ଏ ବନେ ନିଶ୍ଚୟ ଗୋ ।୭।
ସାର ଶୁକ ପକ୍ଷିଯାକ ବଣ୍ୟ ପଶୁ ଯେତେ
ପାଦେ ଶିଖି ଦେବେ ଭେଟି ପରଜାଙ୍କ ମତେ ହେ ।୮।
ଯେ ହାରିବ ଗୋ ରାଜୀବନୟନା ସେ ପୁଣ
କଣ୍ଟୁଆଳ ରୂପ ତାର ହେବ ସେ ଘୋଷଣ ଗୋ ।୯।
ଏହି ବାଣୀ ସଖି ଶ୍ରେଣୀ ଶୁଣି ଅନନ୍ଦିତ
ନୀଳଭୂଷ ପଶାରସ କରେ ପ୍ରମୋଦିତ ହେ । ୧୦ ।

## ତୃତୀୟବାର ଖେଳ

ଯଥା ରାଗ

ପାତ ପଶା ପାଲି — ବାସନ୍ତିକା ବାଳୀ
ହସି ହସି ଦର ଦର ହେ

କହେ ମଞ୍ଜୁ ବାଣୀ ଅସ କୃପପାଣି
ଧର ଧରବ କ ସାର ହେ
ରଘୁମଣି କହେ ଶୁଣି
ସାର ହଳଦୀ ପଶ ମୋ ପୁଣି ହେ । ୧ ।
କାଳି ନାଲ୍ ସାର ସୀତା ଦେବୀଙ୍କର
ଖେଳିବା ଭୁଖୀସ୍ୟ ବାର ଗୋ
କାଠିକୁ ଏକାଠି କରିଣ ବମ୍ବୋଷ୍ଠୀ
ଗଡ଼ାଇଲେ ଠର ଢର ହେ
ପଡ଼େ ଛଅ ତିନ ଦାନ
ବାସନ୍ତିକା ବାହୁ ଦେଲ ପୁଣି ହେ । ୨ ।
ମନମାସ୍ୟା ବୋଲେ ମାର ଏହୁ ବେଳେ
ଲଗିଛୁ ସତର ପଟେ ହେ
ଛାଡ଼ିଲେ ହେ ଗୃପ— ଧାରଣି ସନ୍ତାପ
ଲଭିବ ସିନା ନିକଟେ ହେ
ହସି ରାମ କାଠି ଛାଡ
ପଡ଼େ ପନ୍ଦର ସେ ଷଣି ଦେଉ ହେ । ୩ ।
କି କଲ୍ କି କଲ୍ ମାର୍ ନପାରିଲ୍
ମନମାସ୍ୟା ହେଲ ଦୁଃଖୀ ହେ
ବୋଲେ ରଘୁବୀର କର୍ପାଁ ଦୁଃଖଭର
ହେଉଛ ଚନ୍ଦ୍ରମା ମୁଖୀ ଗୋ
ଖେଳ ଅରମ୍ଭ ଏ ସିନା
ଜିଣି ଯିବେ କି କୁନ୍ଦରଦନା ଗୋ । ୪ ।
ଲୀଳାବତୀ ଭଷି ଅଗୋ ଗୁରୁହାସି !
କନକାଙ୍ଗୀ ରାଜ ଜେମା ଗୋ

ମାର ଏହ୍ୱ ସାର		ରଘୁନାଥଙ୍କର
ଷୋହଲ ଲଗିଛ୍ଛ କନା ଗୋ
ହସି ଗଡ଼ାଇଲେ ଧନୀ
ବାସନ୍ତିକା ବାହ୍ର ନେଲ ପୁଣି ହେ ।୫।
ରଘୁନାଥ ସାର		ମାରୁ ରମାବର
ପରିମଳା ଦେଲ ହସି ହେ
ବୋଲେ ଖେଳ ରସେ		ଅଛ୍ଛା ଏବେ ତୋଷେ
ମଲ୍ଲି ରଘୁକୁଳ ଶଶୀ ହେ
ସବୁଥିରେ ହୁଏ ହାର
ତୁମ୍ଭେ ପରି ନୃପତି-କୁମାର ହେ ।୬।
ଏ ମାଲ ବିନ୍ଧାଣି		ନୁହେ ରଘୁବଂଶୀ
ଧନୁଶର ମରମର ହେ
ସମର ଭିଆଣି		ନୁହଇ ଏ ପୁଣି
ଠକି ଦେବ ଗୃପଧାର ହେ
ହସି ରାମ କହେ ବାଣୀ
ଅଛ୍ଛା ଦେଖ ଦେଖ ଯୋଷାମଣି ଗୋ ।୭।
ଏହା କହ୍ନ ସାର		ଆଖି ଦେଲେ ମାର
ମନମାୟୀ ମୁଖ ନତ ହେ
ଧନୀଙ୍କର ଦାନ		ପଡେ ପୁନଃ ପୁନଃ
ସଖିଏ ଅତି ଜୟଗତ ହେ
ବାସନ୍ତିକା ଏହ୍ନ ବେଳେ
ବୋଲେ ଅଠର ମାର ତ ହେଲେ ହେ ।୮।
ଏହ୍ନ ପଟେ ଉଠି		ଯିବ ଗୋ ବିମ୍ବୋଷ୍ଠି !
ହାରିବେ ଶ୍ରୀରଘୁପତି ଗୋ

ରତ୍ନ ସିଂହାସନ ସାଜବୁ ଯତନ
ହୋଇବା ପାଇଁ ନୃପତି ଗୋ
ହସି ସୀତା ଭାଠେ ଗ୍ଲାଢ଼
ଦେଖ ଦେଖ ଏ ଅଠର ପଣ୍ଡ ଟଗୋ ।୯।
ହୋଇଲ୍ଲ ମଳିନ ବଦନ-ନଳିନ
ଯେଷ୍ଟଣି ରଘୁପତିର ହେ
ଜୟ ଜୟ ସୀତା ଜନକ-ଦୁହିତା
ବୋଲ୍ ସଖି ହର୍ଷଭର ହେ
ତାଳି ମାର୍ ଘନ ଘନ
ହୁଲହୁଳୀ ଦେଲେ ପୁନଃ ପୁନଃ ।୧୦।
ରାଜ ଉପଚାର ସୁଛନ୍ଦ ଚାମର
ନାନା ରତ୍ନ ଆଭରଣ ହେ
ରତ୍ନ ସିଂହାସନ କରଣ ଯତନ
ଆଣ ସହଚରୀଗଣ ଟଗୋ
ବୋଲ୍ ପରମଳା ଭକ୍ତି
ନୀଲ ସେବା ପଦେ ଦବାନ୍ତି ହେ ।୧୧।

ଶ୍ଳୋକଃ

**ପୌଷେମାସି ସିତେପକ୍ଷେ ମଦେ ବାସର ନାୟକେ**
**ଷଟ୍ତ୍ରିଂଶୋ ଗ୍ରନ୍ଥସ୍ୟୋଲ୍ଲାସ ଏକାଦଶ୍ୟାଂ ତିଥୌ ଗତଃ ।୦**

ପୟାର

ଏ ଉଲ୍ଲାସ ହେଲ୍ଲ ଶେଷ ପୌଷ ମାସ ଠାରେ
ସେ ରାଘବ ଦଧୂ୍ୟସ୍ତ୍ରବ ଏକାଦଶୀ ବାରେ ହେ ।୧।

ନାମ ବାର ଶନୀଶ୍ଚର ରବିର ପ୍ରଥମ—
ଯାମ ଭୋଗ ଅନୁରାଗ ଚଉେ ଚନ୍ଦ୍ର ସ୍ୱମ ହେ ।୨।
ଏକାକୀ ତ ହୋଇ ସ୍ଥିତ ମନ୍ଦିର ମଧ୍ୟରେ
ଶେଷ କରେ ଆନନ୍ଦରେ ଏ ଦବ୍ୟ ଗୀତରେ ହେ ।୩।
ଆହେ ସାଧୁ ନିସ୍ପୃହଙ୍କ ଜ୍ଞାନମୟ ଜନେ
ମୁଁ ଶରଣ ନିଶିଦିନ ତୁମ୍ଭ ଶ୍ରୀଚରଣେ ହେ ।୪।
କବିବର ପୀତାମ୍ବର ଜମ୍ବୁଦେବଙ୍କର
ପଦତଳେ କୁତୂହଳେ ହୋଉଛି କଙ୍କର ହେ ।୫।
ହୀନମତି ବୁଦ୍ଧି ବୃତ୍ତି ନାହିଁ ମୋର କିଛି
ପ୍ରଭୁ କୃପା ବଳେ ଏକା ସାହସ ବାନ୍ଧିଛି ହେ ।୬।
ପିତାମାତା ଥାଉ ଚିନ୍ତା ମୋର ଆଉ କିସ
ପଦତଳେ କୁତୂହଳେ ନୀଳକଣ୍ଠ ଦାସ ହେ ।୭।

ଇତି ଶ୍ରୀ ହରଗୌରୀ ସମ୍ବାଦେ ଶ୍ରୀରାମ ବାସନ୍ତିକ ରାସୋତ୍ସବ
ବର୍ଣ୍ଣନେ ଅଷ୍ଟକୀଡ଼ାନ୍ନାଂ ନାମ ଷଷ୍ଠ ଉଲ୍ଲାସଃ ।୦।

## ସପ୍ତମ ଉଲ୍ଲାସ

ଶ୍ଲୋକଃ

**ସପ୍ତମେ ସିଂହପୀଠସ୍ଥାଂ ଜାନକୀଂ ସଖୀବେଷ୍ଟିତାଂ**
**କୋଷପାଲସ୍ତୁ ରାମୋଽସୌ ସାନନ୍ଦଂ ପରିସେବତେ ॥**

ପୟାର

ସାଧୁ ହୃଦ-ପଦ୍ମ ମୋଦ ଏ ଉଲ୍ଲାସ-ରବି
ହୀନନର ପାପଭାର-ପଙ୍କଜକୁ ପବି ହେ ।୧।
ସୁଲକ୍ଷଣା ରାଜଜେମା ଜନକ-ଦୁହିତା
ମୋଦମନେ ସିଂହାସନେ ହେବେ ଏଥି ସ୍ଥିତା ହେ ।୨।
ଉପଗୃହ ଧେଳି କର ସକଳ ସୁନ୍ଦରୀ
ପାଦପଦ୍ମେ ଅଧ ମୋଦେ ଖଟିବେ ତାଙ୍କର ହେ ।୩।
ରଘୁବାଳ କଞ୍ଚୁଆଳ ବେଶ ପିନ୍ଧି ତନୁ
ରାଜାଦେଶ ପାଳି ତୋଷ ହେବେ ଗୋ ସୁତନୁ ଗୋ ।୪।
ଏ ଉଲ୍ଲାସ ଦବ୍ୟରସ ଏଥି ହେବ ଶେଷ
ଭାବେ ନୀଳ ରଘୁବାଳ ଚରଣ-ସାରସ ହେ ।୫।

ଶ୍ଲୋକଃ

**ପାରିନ୍ଦ୍ରମଧ୍ୟା ସକଳାଃ ସୁଲୋଚନାଃ**
**ବିମୃଜ୍ୟ ବେଲାଂ କୁଭସୂଚକାଂ ତଦା**
**ମୃଗେନ୍ଦ୍ରପୀଠେ ନବରତ୍ନଶୋଭିତେ**
**ନରେନ୍ଦ୍ରରୂପାଂ ଦଦୃଶୁ ଧରାତ୍ମଜାଂ ।୨**

ଯଥା ରାଗ

ଜାଣି ସୀତା ମନ ରତ୍ନ-ସିଂହାସନ
ସାଜିଲେ ସକଳ ନାରୀ ହେ

ସୁବର୍ଣ୍ଣ ମାଣିକ୍ୟ     କରେ ଜକ ଜକ
ନାନା ରଙ୍ଗେ ଅଛୁ ପୂରି ହେ
ମୋତି ଚନ୍ଦ୍ରାତପ ତୋରି
ପୁଞ୍ଜି ପୁଞ୍ଜି ସେ ମୁକୁତା ଝରି ହେ ।୧।
ରାଜ ଉପଚାର     ଅଲଟ ଚାମର
ଶ୍ୱେତଛତ୍ର ଅନୁପମ ହେ
ଶ୍ୱେତ ଦୁର୍ବାଦଳ     କୁମ୍ଭେ ତୀର୍ଥ ଜଳ
ଯେ ବିଧି ସର୍ବ ବିଧାନ ହେ
ନିମିଷକେ ଦେଲେ ଯାଇ
ସିଂହାସନେ ବସେ ବିମ୍ବାଧରୀ ହେ ।୨।
ଶ୍ୱେତଛତ୍ର ଧରି     କାଦମ୍ବୀ ସୁନ୍ଦରୀ
ଦର ଦର ହାସେ ଉଭା ହେ
ଅଲଟ ବ୍ୟଜନ     ବେନି ପଦ୍ମଜନ
ସେବାରେ ମାନସ ଲୋଭା ହେ
ଶ୍ୱେତ ଧ୍ୱଜ ଧାଡ଼ି ଧାଡ଼ି
ପରିମଳାହିଁ ଅଷ୍ଟକ ପଡ଼ି ହେ ।୩।
ଦୁର୍ଲଭା ସୁନ୍ଦରୀ     ଅଲଟକୁ ଧରି
ଧୀରେ କରେ ସଞ୍ଚାଳନ ହେ
ବୀରେନ୍ଦ୍ର କାହାଳୀ     ଲୀଳାବତୀ ବାଳୀ
ଫୁଙ୍କିଦିଏ ଘନ ଘନ ହେ
କେବା ପାଦରେ ହୁଳହୁଳୀ
କେବା ଚନ୍ଦନ ଦେଉଛୁ ବୋଲି ହେ ।୪।
ମୁଖେ ନାଗବଲ୍ଲୀ     ଦିଏ କେଉଁ ବାଳୀ
କେ ଦେଖାଏ ଦରପଣ ହେ

ଧୂପ ବାତି ଘେନି          ଉଭା କେଉଁ ଧନୀ

କାର ପ୍ରତିହାରୀ ପଣ ହେ

ସୁନା ବେତ ଧରି କରେ

ଉଭା କର ଯୋଡ଼ି ଶ୍ରୀଛାମୁରେ ହେ ।୫।

ଢୁଲି ଖଣ୍ଡା ଫରି          ଧରେ କେ ସୁନ୍ଦରୀ

କେବା ସେନାପତି ବେଶ ହେ

କେ କରଇ ନାଟ          ପ୍ରକାଶି ଉକୁଟ

ଭାଟ ପରି କେବା ଯଶ ହେ

ଗାନ କରେ ମତ୍ତ ଭୋଳେ

ଜୟ ସୀତା କାନ୍ତ କୁତୂହଳେ ହେ ।୬।

ଚନ୍ଦନ ପଟୀର          ପୁଣି ଘନସାର—

ରଜ କେ ଫିଙ୍ଗଇ ତୋଷେ ହେ

ବେଣୁ ବୀଣା ରବା          ବାଇ କେ ଅଥବା

କେ ନାଚଇ ମନ୍ଦ ହାସେ ହେ

କେବା କରେ ପୁଷ୍ପ ବୃଷ୍ଟି

ପ୍ରେମାନନ୍ଦମୟ ହୁଏ ସୃଷ୍ଟି ହେ ।୭।

ମନମାୟୀ ସଖି          କଳାକର ମୁଖୀ

ବେଳା ଦେଖି ଶୁଭ ଅତି ହେ

ଧରି ସ୍ୱର୍ଣ୍ଣଝରି          ତହିଁ ତୀର୍ଥ ବାରି

ଭରଣି ହରଷ ମତି ହେ

ମୋଦେ ଅଭିଷେକ କଲେ

ସୁଖେ ମଙ୍ଗଳାଷ୍ଟକ ପଢ଼ିଲେ ହେ ।୮।

ସତବର ଶାଢ଼ି          ଶ୍ରୀମତୀ ସଜାଡ଼ି

ଭିଡ଼ିଲେ ବଲ୍ଲଭ ଶିର ହେ

ଗଦ୍ଗଦ ରବ ସଭାର ଅରମ୍ଭ
ସୁଧର୍ମୀ ମାନବ ଦ୍ୱାର ହେ
ଶୁଭେ ଜୟ ଜୟ ସ୍ୱନ
ମୋଦମୟ ପଶୁ ପକ୍ଷିଗଣ ହେ ।୯।
ସର୍ବେ ସୀତାଭାବେ ଲଭି ପ୍ରେମ ଗର୍ବେ
ସୁବର୍ଣ୍ଣରୁ ଦଶେ ତୋଷି ହେ
ସେ କାଳ ଝଟଉ ସେହି କାଳ ମୂର୍ତ୍ତି
ଭାବ ନାଶି ଦନ ପରି ହେ
ଦ୍ରବ ଯିବ ନଷ୍ଟେ ପବ
ଭାବ ତାହା ହେଲା ମାଳ କବ ହେ ।୧୦।

ଶ୍ଲୋକଃ

**ସୀତାବର୍ଣ୍ଣ ସମାଯୁକ୍ତାଃ ସର୍ବେ ସୁବର୍ଣ୍ଣରୂପିଣଃ**
**ସ୍ଥାବରାସ୍ଥାବରୌ ଚୈବ ସରଯୂ ତଟିନୀ ତଥା ।୩**

ଚତୁଷ୍ପଦୀ

ଦେବୀ ଜାନକୀ ଶୋଭା ଅନଙ୍ଗ କନକଭୂଷଣ ରେ
ପିକ କନକ ଶୁକ କନକ ସରଯୂ ଜୀବନ ରେ ।୦।
ତରୁରେ ଲତା କନକ ଯୁତା
କନକ ସୁମନ ରେ
ନିର୍ଝର ବାଣୀ କନକ ଠାଣି
କଲ୍ଲୋଳ-ସୁତାନ ରେ ।୧।
ନୀଳ ଜୀମୂତ କନକ ବତ
ମୟୂରୀ ଖଞ୍ଜନ ରେ

ଚନ୍ଦ୍ରମା କାନ୍ତି କନକ ଜ୍ୟୋତି
ଦିଶଇ ଗଗନ ରେ ।୨।
କନକ ଦୀପ ତାରା କଳାପ
କପର ଶୋଭନ ରେ
ସଖୀ ଜନକ ସମ ବନକ
ଆନନ୍ଦ ନିସ୍ୱନ ରେ ।୩।
ଜନକ ଅଙ୍ଗୀ କନକ ଭଙ୍ଗୀ
କନକ ଗହଣ ରେ
ନାରଦ ଭବ ନୀରବ କବ
ଭାବୁକ ଭାବନ ରେ ।୪।
ଜନକ ମୂର୍ତ୍ତି କନକ ଦୀପ୍ତି
ଜନକ ମିଳନ ରେ
ଦିବସ ରାତି ଚହଟ ଚାନ୍ଦି
ନୀଳ ବଚନ ରେ ।୫।

---

## ପୟାର

ସୀତା ଭବେ ମୃଦୁରାବେ ପିକ କରେ ଗାନ
ଜୟ ସୀତା ଗୁଣଯୁତା ରମଣୀ ରତନ ଗୋ ।୧।
ଜୟ ସୀତେ ପତିବ୍ରତେ ଜୟ ଜୟ ଦେବ ।
ନରପତି ରୂପ ଅତି ଭାବେ ଅନୁଭବ ଗୋ ।୨।
ସେ ମୟୂରୀ ନୃତ୍ୟ କରି ମୟୂର ସଗଣେ
ବୋଲେ ରାଜବେଶେ ପୂଜ୍ୟ ସୀତା ଏ କାନନେ ଗୋ ।୩।
କଳ୍ପଲତା ଦେବୀ ସୀତା କାନନ ଈଶ୍ୱରୀ
କି ସୁନ୍ଦର ଷଡ଼ୁଅର ଏ ସର୍ବ ସୁନ୍ଦରୀ ଗୋ ।୪।

ଜୟ୍ତୁ ନାରୀ କୁଳେଶ୍ବରୀ ଧନ୍ୟ ଏ ପୁଲିନ
ଧନ୍ୟ ରସସ୍ଥଳୀ କାଶବାସୀ ଗଣେ ଧନ୍ୟ ଗୋ ।୫।
ଧନ୍ୟ ମାୟାଧର ମାୟା ଧନ୍ୟ ରଘୁପତି
ଭବଗ୍ରାହୀ ଭବେ ମୋହି ସକଳ ଯୁବତୀ ହେ ।୬।
କେତେ ଭାଗ୍ୟ କି ସୁଯୋଗ ଧନ୍ୟ ଭକ୍ତ ଭବ
ନୀଳ ଭୂପ ଯାଙ୍କୁ ତୋଷ ହୋଇଲେ ବିଧବ ହେ ।୭।

ଧାର୍ଘ

ଧୀରେ ଧୀରେ ଯୋଡ଼ି କର  ବାସନ୍ତିକା ମନ୍ତ୍ରୀବର
ଜଣାଏଁ ସ୍ବୟମ୍ବରେ ପ୍ରେମଭରେ
ଅଗୋ ରାଜ ରାଜେଶ୍ବର  ଏହି କାନନ ନଗରୀ
ପୂର୍ଣ୍ଣ ତବ ପ୍ରଭା ସମ୍ୟକରେ ଗୋ
ଧନ୍ୟ ଗୋ
ପଶୁ ପକ୍ଷୀ ପରଜା ସକଳ
ତୁମ୍ଭ ପ୍ରେମେ ହରଷେ ବିହଳ ଗୋ ।୧।
ନୃପତିର ଉପସ୍ଥିର  ପୂର୍ଣ୍ଣ ସକଳ ସମ୍ଭାର
ଆଡ଼ମ୍ବର ବାଧି ଯଥାକ୍ରମ
ଦେଶ ହେଲେ ଗୃହହୀନ  ନୃପ ଲଭେ ଅପମାନ
ରାଜନୀତି ହୁଅଇ ଖଣ୍ଡନ ଗୋ
ଧନ୍ୟ ଗୋ
କର କର ଏଥିର ବିଗ୍ଚାର
ଦେଶ ଘୋଷ ରଖୁ କହୁଅଛ ଗୋ ।୨।
ଶୁଣି ହସି ମନ୍ଦେ ମନ୍ଦେ  ଧନ୍ୟ ବୋଲନ୍ତି ଆନନ୍ଦେ
ତୁମ୍ଭେ ମୋର ପରାମର୍ଶ ଦାତା

କେ ଦେବ ଏଥି ଘୋଷଣ ନେଉ କଟୁଆଳ ପଣ
ରାଜୁବଣ କର ଏ ବ୍ୟବସ୍ଥା ଗୋ
ସଖି ଗୋ
ଶୁଣି କର ଯୋଡ଼ ଯୋଗେଶ୍ୱର
ଉଭା ହୋଇ କହନ୍ତି ଛମୁର ଗୋ ।୩।
ଗୋ ଵପିନ ରାଜେଶ୍ୱରୀ ! ସୀତେ ତ୍ରିପୁର ସୁନ୍ଦରୀ
ଦୟା ହେଉ କଟୁଆଳ ଶାଢ଼ୀ
ରଖିବା ଏ ବନ ଦେଶ ତୁମ୍ଭ ଅଙ୍କରେ ନଟରଶ
ଲେଖି ନେବା ବରତନ ପଣ ଗୋ
ଧନି ଗୋ
ଶୁଣି ସର୍ବେ ହୋଇଲେ ଉଷତ
କଟୁଆଳ ହେବେ ରଘୁନାଥ ଗୋ ।୪।
ରତନ ଜଡ଼ିତ ପାଟ— ଶାଢ଼ୀ ପ୍ରଭୁ ଶିରତଟ
ସଜାଡ଼ ଭିଡ଼ିଲେ କୃଶୋଦରୀ
ବାମା ଦେଲେ ହୁଳହୁଳୀ ଦେବେ କୁସୁମ ଅଞ୍ଜଳି
ବରଷିଲେ ଶୂନ୍ୟେ ସଭା କରି ଗୋ
ଧନି ଗୋ
ସେକାଳ ସମ୍ପତ୍ତି ମନେ ଭାବ
ଦୀନ ନୀଳକଣ୍ଠ ହେଲ କବି ଗୋ ।୫।

---

## କଟୁଆଳ ବେଶ ବର୍ଣ୍ଣନା

ଯଥା ରାଗ

କଟୁଆଳ ବେଶ ହେଲେ ରଘୁଈଶ
ମନ୍ଦ ମନ୍ଦ ହାସ କରି ହେ

ବଳାଗନ୍ତା ଢମ    ଅତି ଅନୁପମ
ଶିରେ ନାଲି ପାଗ ଭିରି ହେ
ପୁଞ୍ଜି ପୁଞ୍ଜି ଥୋପା ତହିଁ
ଆହା କେଡେ ସୁନ୍ଦର ଦିଶଇ ହେ ।୧।
ସେ ପୀତ ବସନ    ଫସି ନୀବି ପୁଣ
ସ୍ୱର୍ଣ୍ଣ ପେଟୀ କଟି ଦେଶ ହେ
ବାହୁମୂଳେ ସୀତା    ଏ ନାମ ଶୋଭିତା
ଜଣାଏଁ ମୁଁ ତାଙ୍କ ଦାସ ହେ
ସ୍ୱର୍ଣ୍ଣ ଯଷ୍ଟି ଧରି କର
ପଦେ ବନ୍ଧା ହୋଇଛୁ ଘୁଙ୍ଗୁର ହେ ।୨।
ଯୋଡ଼ି କରି ଯୁଗ    ଉଭା ହୋଇ ବ୍ୟଗ୍ର
ଜଣାନ୍ତି ନୃପତି ଗ୍ଗମୁ ହେ
କି ହୁଏ ଆଦେଶ    ପାଳିବ ଏ ଦାସ
ଶରଣ ଗଲି ଧରମୁଁ ହେ
ମନ୍ତ୍ରୀ ଦୁର୍ଲଭ ସୁନ୍ଦରୀ
କହେ ଶୁଣ ଆଜ୍ଞା ଅବଧାରି ହେ ।୩।
ଆହେ କଞ୍ଚୁଆଳ    ଏ ଯେ ମହୀପାଳ
ଏହାଙ୍କ ସନ୍ଦେଶ ଧର ହେ
ବୁଲି ଏ କାନନ    ଦିଅଅ ଘୋଷଣ
ସର୍ବେ ହେବେ ପ୍ରେମଭର ହେ
ଶୁଣି କଞ୍ଚୁଆଳ ତୋଷ
ଯାହା ଆଜ୍ଞା ବୋଲି ବୋଲେ ଭୂପ ହେ ।୪।
ଶିରେ ଏ ଆଦେଶ    ଘେନି ରଘୁଈଶ
ଫେରିଲେ କାନନ ସାରି ହେ

ନୃପ ଭୃତମନ ଆହେ ପ୍ରଜାଗଣ

ନୃପତି ଆଦେଶ ପତ୍ର ହେ
ସେହୁ କହୁଅଛ ପଦ
ମାଳ ଭାବେ, ନାଶିବ ବିପଦ ହେ ।୫।

ପୟାର

ଭକ୍ତ ପ୍ରେମ ବଶେ ରାମ କହୁଅଛ ବେଶେ
ପ୍ରତି କୁଞ୍ଜ ସେହୁ କଞ୍ଜ-ନେତ୍ର ଭ୍ରମି ତୋଷେ ହେ ।୧।
ଦେଲେ ପୁଣ ଏ ଘୋଷଣ ରଘୁକୁଳବର
ଏ ବିପିନରେ ରାଜନ ସୀତା ନାଥବର ହେ ।୨।
ପ୍ରଜାଗଣ ସାବଧାନ ହୋଇ ଥାଅ ରହୁ
ଶତ୍ରୁ ଭୀତି ପ୍ରେତପତି ଦଣ୍ଡ ଏଥି ନାହିଁ ।୩।
ଦିବ୍ୟ କର୍ମ ନ୍ୟାୟ୍ୟ ଧର୍ମ ହେଉଛି ପାଳିତ
ବେଳ ଜାଣି ମୀର ଆଣି ଦେବେ ପୁରୁହୂତ ହେ ।୪।
ପ୍ରେମ ରସେ ମଜ୍ଜି ତୋଷେ ସର୍ବେ ଥାଅ ରହୁ
ନିରନ୍ତର ଭଜ ଧୀର ସୀତା ବଇଦେହୀ ହେ ।୫।
ବୋଲ ସର୍ବେ ମତ୍ତଗର୍ବେ ଜୟ ସୀତା ଜୟ
ଏ ଘୋଷଣ ପୁନଃ ପୁନଃ ଦିଏ ରଘୁରାୟ ହେ ।୬।
ଧନ୍ୟ ସୀତା ଗୁଣଯୁତା ଧନ୍ୟ ରଘୁପତି
ଧନ୍ୟ ପ୍ରେମ ଭକ୍ତ ଗୁଣ ଧନ୍ୟ ସେ ଯୁବତୀ ହେ ।୭।
ପ୍ରେମ ବଳେ କୁତୂହଳେ ବଶ କଲେ ହରି
ଅଚିରତେ ପଦାଗ୍ରତେ ମାଳ ଅବଧାରି ହେ ।୮।

ଶ୍ଳୋକଃ

**ଅଥ ଯୋଗେଶ୍ୱରୋ ରାମଃ କଥୟାମାସ ଜାନକୀଂ**
**ବିନାମୂଲ୍ୟେନ ଦାସତ୍ୱଂ ଗତୋଽହଂ ତ୍ୱଂ ବିଗ୍ରହ୍ୟ ।୪**

ପୟାର

ବୋଲେ ରାମ ଗୁଣଧାମ ଯୋଡି ବେନି କର
ରାଜେଶ୍ୱରୀ ଗୋ ମୋହର କଥା ହେତୁକର ଗୋ ।୧।
ତୁମ୍ଭ ଦାସ ହୋଇ ଦେଶ ଦୋଷ ରକ୍ଷା କରି
ବରଜନରେ ବନ୍ଦୀନ ହୋଇଲି ଏପରି ଗୋ ।୨।
ଦୟାକରି ରାଜେଶ୍ୱରୀ ! ମନ୍ତ୍ରୀଙ୍କ ଛାମୁରେ
ହୁଏ ଯାହା ଗୋ ସୁଦେହା ଲେଖି ଦିଅ ବାରେ ଗୋ ।୩।
ଏହି ବାଣୀ ସେ ରମଣୀମଣି ଶୁଣି କରି
ମନ୍ଦେ ମନ୍ଦେ ପ୍ରେମାନନ୍ଦେ ହସି କୃଶୋଦରୀ ହେ ।୪।
ବାଣୀ ବୋଲେ, କହୁଅଛେ ନିଅ ବରଜନ
ଯେବା ଇଚ୍ଛା ମନୋବାଞ୍ଛା ନୀଳ ବିବରନ ହେ ।୫।

ଯଥା ରାଗ

ନିଅ ରତ୍ନମାଳ　　　　ଅଛେ କହୁଅଛ
ସୁବର୍ଣ୍ଣ କମର ପେଟିରେ
ରତ୍ନ ଜଡ଼ି କସ　　　　ଗନ୍ତା ବକ୍ଷ ଦେଶ
ପିନ୍ଧ କ୍ଷୁଦ୍ର ଘଣ୍ଟି କଟିରେ
ନିଅ ନିଅ ରତ୍ନ ଦଣ୍ଡ
କମ୍ପା ହେଉ ମିଛେ ଲଣ୍ଡଭଣ୍ଡ ରେ ।୧।
କରକୁ କଙ୍କଣ　　　　ନାନା ଅଭରଣ
ଯେ ଅବା ହୁଏ ମାନସରେ
ରତ୍ନ ଖଟ ଦୋଳି　　　　ବାଙ୍କିଅ ମୁଠୁଳି
ଶୁଣି ରାମ ହସ ହସ ହେ
ଧୀରେ ଧୀରେ ଯୋଡିକରି
ବୋଲେ କହୁଅଛ ରଘୁବୀର ହେ ।୨।

ନୃପତି କୃପାରେ    ପରିପୂର୍ଣ୍ଣ ମୋରେ
ଲୋକମାତା ପରସନ୍ନ ହେ
କଥା ଏକ ନାହିଁ    ଦୟା କଲେ ତହିଁ
ମାନସ ହୋଇବ ପୂର୍ଣ୍ଣ ହେ
ହସି ସୀତା ପ୍ରତ୍ୟୁତ୍ତର—
ଦେଲେ, ମାଗ ଯା' ଇଚ୍ଛା ତୁମ୍ଭର ହେ ।୩।
ତୁମ୍ଭେ କଳ୍ପଲତା    ଜନକ-ଦୁହିତା
ହେ ବିପିନ ରାଜେଶ୍ୱରୀ ଗୋ
ତୁମ୍ଭ ଗୁଣ ଗାନ    କରି ନିଶି ଦିନ
ହେବି ମୁଁ କାନନଗୃହୀ ଗୋ
ବୀଣା ଝଙ୍କି ଦିଅ କରେ
ବାଇ ବୁଲିବି ତୁମ୍ଭ ନାମରେ ଗୋ ।୪।
ଶୁଣି ଏ ଉତ୍ତର    ସୀତା ଦରଦର—
ହସି, ଲୀଳାବତୀ ଚାହିଁ ହେ
ଅଗୋ ସହଚରି !    ଏବେ ଦୟା କରି
ବୀଣା ଦିଅ କରେ ନେଇ ଗୋ
ସେ ତ ଅମ୍ଭ ହାତକାହୀ
ଶୁଣି ଲୀଳା ରହେ ଅବଧାରି ହେ ।୫।
ସେହିକ୍ଷଣି ବୀଣା—    ବିରଚନା, ନିପୁଣା
ବିପଞ୍ଚି କି ଦେଲା ଖର ହେ
ଶ୍ୟାମଳ କୋମଳ    ଶ୍ରୀକର ଯୁଗଳ
ବଢ଼ାଇଣ ରଘୁବୀର ହେ
ମନ୍ଦେ ହସି ବିମ୍ବାଧରେ
ବୀଣା ଧରିଲେ ସେ ବାମ କରେ ହେ ।୬।

## ଚତୁଷ୍ପଦୀ

ବୀଣା ବାଜରେ, ଲଳିତ-ମଧୁର-ଛନ୍ଦ ଘେନି;
ପବି ଦ୍ରବି ଯାଅ ଖର ଉଜାଣି ତଟିନୀ ନୀର
ବହିଯାଅ, ଶୁଣି ଏହୁ ଧ୍ୱନିରେ । ଘୋଷା ।
ଗାଅ ସୀତା ପତିବ୍ରତା ନିତ୍ୟ ପ୍ରେମ-କାମଲତା
ଭକ୍ତ-ପ୍ରୀତି-ଯୁତା ସୁହାସିନୀ
ରାମ-ହୃଦ-ରାଜ୍ୟ-ରାଣୀ ଅତୁଳ୍ୟ ମୋହନ-ଠାଣି
ନିତ୍ୟ ନବ-ଭାବ-ପ୍ରକାଶିନୀ ରେ ।୧।
ବୋଲ ସଖି ମନମାୟା ରୂପ ଧରେ ବଦୁ୍ୟଚ୍ଛାୟା
ପରିମଳା ସୁଗନ୍ଧ-ହାସିନୀ
ପ୍ରେମିକା ସମାଜ-ଶଣୀ ଗାଅ, ଲୀଳା ଶୁଭ୍ରକେଶୀ
ବାସନ୍ତିକା, ସୁମତ୍ପ୍ରକାଶିନୀ ରେ ।୨।
ଗାଅ ଜୟ ଜୟ ବାଣୀ ଯେତେ ପ୍ରେମିକା-ରମଣୀ
ହୋଇଛନ୍ତି ଭକ୍ତ-ପାଗଳିନୀ
ଉଚ୍ଚାର ସେ ଦିବ୍ୟ ନାମ ନବ ପ୍ରେମାମୃତ ଧାମ
କର ବୀଣା ମୋହନ-ରାଗିଣୀ ରେ ।୩।
ରାମ ପ୍ରେମ ଅନୁଗତା ସୋହାଗିନୀ ରସଲତା
ଭକ୍ତ-କଳ୍ପଲତା ଯଜ୍ଞବନୀ
ଲଳିତ ମୋହନ ଛନ୍ଦେ ବାଜ ରେ ପଞ୍ଚମ ଆନନ୍ଦେ
ନୀଳକଣ୍ଠ କରୁଛି ଧଇନୀ ରେ ।୪।

### ପୟାର

ବୀଣା ନାଦ ଯେ ତବଦ କଲ୍ ସବ ଯୋଷା
ପଞ୍ଚୁଅର ଉତପର ତେଜ୍ ରସାଳସା ହେ ।୧।

ଜନମତ୍ତ ଚମତ୍କୃତ ଜନକ-କୁମାରୀ
ସିଂହାସନ ତେଜି ପୁଣ ଖରେ ସୁକୁମାରୀ ହେ ।୨।
ସେ ଯେ ବାମନେତ୍ରା ରାମ ବାମ ପାଶେ ସ୍ଥିତ
ଚତୁର୍ଦ୍ଦିଶ ନାରୀ ବଂଶ ଘେର ଅଚମ୍ଭିତ ହେ ।୩।
ମନୋରମେ ତ୍ରିଭଙ୍ଗିମେ ନାଚେ ରୂପଧର
ବାମ ଭାଗେ ପ୍ରେମଯୋଗେ ସୀତା ନାରୀବର ହେ ।୪।
ନାରୀବଂଶ ହସ ହସ ଚତୁର୍ଦ୍ଦିଗେ ନାଚ
ଏ ମିଳନ ମୋହମାନ ଭରଲ୍ଲ ହରଷ୍ଣ ହେ ।୫।
ଥାଇ ଶୂନ୍ୟେ ଦେବଗଣେ ପୁଷ୍ପ ବରଷିଲେ
ଅପସରୀ ବିଦ୍ୟାଧରୀ ସଙ୍ଗୀତ ଭାଷିଲେ ହେ ।୬।
ଚତୁର୍ଦ୍ଦିଶ ପ୍ରେମବଶ ଶୁଭେ ଜୟ ଜୟ
ସୀତା ରାମ ପୂର୍ଣ୍ଣବ୍ରହ୍ମ ମିଳନ ସମୟ ହେ ।୭।
ହେବେ ମୁକ୍ତ ସେ ଭକ୍ତକ ସେହ୍ନେ ଭାବ ଭାବ
ଯେ ପ୍ରସାଦେ ମାଳ ମୋଦେ ବୋଲଉଛୁ କବ ହେ ।୮।

## ଚତୁଷ୍ପଦୀ

ସୁନ୍ଦର ଗୋ, ମଧୁ ମିଳନ
ବାମେ ସୀତା ରାଣୀ ଶୋଭେ ଅତି ବନୋଦନ ।ପଦ।
ଗଉର ଅଙ୍ଗରେ ମିଶେ ଶ୍ୟାମ ଅପଘନ
ଢୁଳଢୁଳ ଦେଲେ ସଖି ପ୍ରେମରେ ମଗନ ।୧।
ଶୁକ ସାରି ପିକ ଜୟ ଗାଇ ଘନ ଘନ
ଜୟ ସୀତା ଗୁଣଯୁତା ଜୟ ରଘୁନନ୍ଦନ ।୨।

ମଧୁର ପଦେ କଙ୍କିଣୀ ମଧୁର ନିସ୍ୱନ
ମଧୁ ହାସ ବିମ୍ବାଧରେ ମଧୁର ନର୍ତ୍ତନ ।୩।
ପାରିଜାତ ସଙ୍ଗେ ଗଙ୍ଗା ନୀରବରଷଣ
ମଙ୍ଗଳ ଅଷ୍ଟକ ପଢୁଛନ୍ତି ଋଷିଗଣ ।୪।
ଧାୟି ମଧୁର ମୂରତି ମଧୁର ଭୁବନ
ମଧୁ ଭାବେ ମଧୁମୟ ନୀଳକଣ୍ଠ ମନ ।୫।

ଯଥା ରାଗ

ଅହା କି ସୁନ୍ଦର ସୀତା ରାମଙ୍କର
ମଧୁର ମିଳନ ବେଶ ହେ
ମଧୁ ବିମ୍ବାଧର ମୃଦୁ ମୃଦୁତର
ଅଧରେ ମଧୁର ହାସ ହେ
ମଧୁ ନର୍ତ୍ତନର ଭଙ୍ଗୀ
ମଧୁମୟୀ ସର୍ବେ ପ୍ରେମସଙ୍ଗୀ ହେ ।୧।
ମଧୁମୟ ବନ ସରଯୂ ପୁଳିନ
ସର୍ବେ ମଧୁରସେ ପୂର୍ଣ୍ଣ ହେ
ଶୁକ ସାରି ପିକ ସେ ମଧୁ ମାଦକ
ଲଭି ହେଲେ ପ୍ରେମ ମଗ୍ନ ହେ
ମଧୁମାସେ ମଧୁବାସେ
ମଧୁସୂଦନ ବିଳସେ ରସେ ହେ ।୨।
ଉନ୍ମତ୍ତରେ ନୃତ୍ୟ କଲେ ରଘୁସୁତ
ନାଚନ୍ତି ଅବଳା ଗଣ ହେ
ହେରି ପ୍ରତିକୁଞ୍ଜ ସଙ୍ଗତରେ ଭଞ୍ଜ-
ନୟନା ଦେଖନ୍ତି ବଦନ ହେ
ବିଶ୍ରାମିଲେ ତତପର
ନାଗେଶ୍ୱର କୁଞ୍ଜେ ରଘୁବୀର ହେ ।୩।

ଜାଣି ତାଙ୍କ ମନ ବନ ଦେବୀ ଗଣ
ସୁପକ୍ୱ ଫଳ-ସମ୍ଭାର ହେ
ପନସ-ରସାଳ ଦ୍ରବ୍ୟ ନାରିକେଳ
ନାଗରଙ୍ଗ ଯେ ପ୍ରକାର ହେ
ପକ୍ୱ ମଞ୍ଜି କରକର
ଯେବା ବିଧାନ ଥିଲା ତାଙ୍କର ହେ ।୪।

ଦେଖି ରଘୁନାଥ ପରମ-ଉଷତ
ସୀତାଙ୍କୁ ଦେଲେ ଭୁଞ୍ଜାଇ ହେ
ଧନୀ ଉଦବେଗ ଧରି ବେଗ ବେଗ
ପ୍ରଭୁଙ୍କ ମନ ରଞ୍ଜାଇ ହେ
ସୀତାରାମ ମୁଖଁୁ ଯାହା—
ଥିଲା, ତାହା ଭୁଞ୍ଜିଲେ ସୁଦେହା ହେ ।୫।

ସୁବାସିତ ଜଳେ ଅତି କୁତୂହଳେ
ବଢ଼ାଇଲେ ଅଚମନ ହେ
ଠାକୁରଙ୍କ ମନ ଜାଣି ଦେବୀ ପୁଣି
ଦେଲେ ତାମ୍ବୁଲ ବଦନ ହେ
ସୀତା ମୁଖେ ରାମ ଭର
ସଖୀଗଣେ ହେଲେ ଠରାଠର ହେ ।୬।

ସେ ମିଳନ ରସ ସେହି କାଳବେଶ
ସେ କାଳ ଦ୍ରବ୍ୟ-ମାଧୁରୀ ହେ
ନୀଳକଣ୍ଠ ତୋଷେ ରଜନୀ-ଦିବସେ
ଭାବେ ସୀତା ଗୃହଧାରୀ ହେ
ଅଟେ ସନ୍ତାପବାରଣ
ମୋତେ କରିବା ହେଉ କାରଣ ହେ ।୭।

ଊ୍ହା

ଜୟ ସୀତା ଜୟ ରଘୁପତି
ଜୟ ମନମାୟା ଲୀଳାବତୀ ।୧।
ଜୟ ପରିମଳା ବାସନ୍ତିକା
ଜୟ ଗୋ ଦୁର୍ଲଭ ପ୍ରେମାଧିକା ।୨।
ଜୟ ଗୋ ସୁଶୀଳା କାମକଳା
ଲୀଳାମୟୀ ଜୟ ଗୋ ଚଞ୍ଚଳା ।୩।
ଜୟ ଜୟ ଅଷ୍ଟ ସଖିଗଣେ
ଜୟ ସୀତା ଜୟ ରଘୁନାନ ।୪।
ଜୟ ଜୟ ରାମ ଭକ୍ତଗଣେ
ଜୟ ରାମ ଅନୁରକ୍ତ ଜନେ ।୫।
ଜୟ ସାଧୁ ସନ୍ଥ ଜୟ ଜୟ
ଜୟ ଏ ଧରଣୀ ରାମ ମୟ ।୬।
ଜୟ ସେ ପୁଳିନ ବନଲତା
ଜୟ ଗୋ ସରଯୂ ପ୍ରେମରତା ।୭।
ଜୟ ରଘୁନାଥ ଯୋଗେଶ୍ବର
ବୋଲେ ନୀଳକଣ୍ଠ ମୁଁ କଙ୍କର ।୮।

ଶ୍ଳୋକଃ

**ମାଘେମାସି ଶୁକ୍ରବାରେ ମୃଗାସ୍ୟ ସଂକ୍ରମେ ତଥା**
**ସପ୍ତମଷ୍ଟାୟ୍ୟୁଲ୍ଲାସୋ ଗ୍ରନ୍ଥସ୍ୟ ବିଗତଃ ଖଲୁ ।୦।**

ପୟାର

ହେଲା ଶେଷ ଏ ଉଲ୍ଲାସ ପ୍ରଭୁ ଦୟାବଳେ
ମାଘମାସ ହେ ବନ୍ଧୁଷ ଭୃଗୁବାର ହେଲେ ହେ ।୧।

ସଂକ୍ରମଣ ସେହ୍ନାଦନ ନାମ ତା' ମକର
ମଧ୍ୟାହ୍ନରେ ଶେଷକଲେ ଏହି ରସ ସାର ହେ ।୨।

ଏକାକୀ ତ ହୋଇ ସ୍ଥିତ ଶ୍ରୀରାମ ମନ୍ଦିରେ
ସ୍ମରି ରାମ ଗୁଣଧାମ ପ୍ରେମ ପୁଲକରେ ହେ ।୩।

ଅହେ ସାଧୁ ଜ୍ଞାନମୟ ନମ୍ରଲୋକଙ୍କ ଜନେ
ଅପରାଧ ଛେଦବାଦ ନଦେଖିବା ମନେ ହେ ।୪।

ଅହେ କବି କୁଳରବି ସ୍ୱାମୀ ଜୟଦେବ
ଅହେ ବ୍ୟାସ ଋଷିଈଶ ସୁଦୟା କରିବ ହେ ।୫।

ଅହେ ଋଷିକୁଳ ଶଶୀ ବାଲ୍ମୀକି ଗୋସାଇଁ
ଦୟାକର ମୁଁ ତୁମ୍ଭର ପଦରେ ବିନୟୀ ହେ ।୬।

କବିବର ପୀତାମ୍ବର ଅହେ ବ୍ରହ୍ମବେତ୍ତା
କଲ ଗ୍ରନ୍ଥ ପ୍ରକାଶିତ ରାମ ରାସ-ଗାଥା ହେ ।୭।

ଦୟାକର ସାଧୁନର ମୁଁ ଅତି ଅଜ୍ଞାନ
ଜଡ଼ ମାୟା ମୋହେ କାୟା ହେଲି ଭିନ୍ନ ଭିନ୍ନ ହେ ।୮।

ମୁଁ କି ଲୋକ ହେ ବିବେକ ସୂଚୀମୁନ ଧରି
ହିମାଚଳ ଟେଳମଳ ପାରଇ କି କରି ହେ ।୯।

ଆକାଶର ସୁଧାକର ଧରେ କି ବାମନ
ମୁଁ ଅଜ୍ଞାନ କି ଲିଖନ କରେ ଶାସ୍ତ୍ରମାନ ହେ ।୧୦।

ପ୍ରଭୁ ଦୟା କଲେ ଯାହା ପାରେ ତାହା ଲେଖି
ସାହାପକ୍ଷ ନଳୀନାକ୍ଷ ମୋହର ଏଥି କି ହେ ।୧୧।

କୃପାମୟ ରଘୁରାୟ ଶ୍ରୀମତୀ ଜାନକୀ
ପଦ ସେବା ବିନା ଅବା କେ ମୋର ଅନ କି ହେ ।୧୨।

ପିତାମାତା ଆଉ ଗନ୍ତା ମୋର ଅନ୍ତ ବାସ
ପଦ୍ମତଳେ କୁତୂହଳେ ନୀଳକଣ୍ଠ ଦାସ ହେ ।୫।

ଇତି ଶ୍ରୀ ହରଗୌରୀ ସଂବାଦେ ଶ୍ରୀରାମ ବାସନ୍ତିକ ରାସୋତ୍ସବ
ବର୍ଣ୍ଣନେ ରାଜେଶ୍ୱରୀ ବେଶ କଥନଂ ନାମ ସପ୍ତମୋଽଲ୍ଲାସଃ ।

## ଗ୍ରନ୍ଥ ସମାପ୍ତି

ଶ୍ଳୋକଃ

**ମୋକ୍ଷଦ୍ୱାର କପାଟ ଘାଟନପଟୋ ! ହେ ରାମ ! ରାସେଶ୍ୱରି !**
**ସୀତେ! କାନ୍ତପଦାବ୍ଜ ଯୁଗ୍ମସବିଧେ ବାଂ ମେ ମନଃ ସନ୍ତତମ୍ ।**
**ସଂଦୀପ୍ତ ଭବଦୂଃଖ ଦାବ ଦହନେ ଦଗ୍ଧସ୍ୟ ତିଷ୍ଠ ତ୍ୱିତି**
**କୁର୍ବାର୍ଥାଂ ସଫଳାଂ ନତିଂ ଚ କୃପୟା ଦୀନାର୍ତ୍ତି ଦୁଃଖାର୍ଦ୍ଦ୍ରୟା ।**

ପଦ୍ୟାର

ଜୟ ସୀତେ ପତିବ୍ରତେ କାମ-କଳ୍ପଲତା
ସୁନ୍ଦରୀ ଭକ୍ତିମତେ ଦିବ୍ୟ ପ୍ରେମ-ଯୁତା ଗୋ ।୧।
ମୃଦୁହାସୀ ପିକ ଭାଷୀ ରାମ ରାସେଶ୍ୱରୀ
କୃପାମୟୀ ଦୟା ବନ୍ଧୁ କର ତୋ କିଙ୍କରୀ ଗୋ ।୨।
ଭାଗ୍ୟଥିବ ସତେ ହେବ ଏ ଦୀନ ସେବକୀ
ରାସ ଧୂଳି ହୋଇ ବୋଲି ଥରେ ନାଚବ କି ଗୋ ।୩।
ବାସ ଫୁଲ ଧରି ଗେଲ ହୋଇ ଶିରେ ଖୋସି
ଗାଇ ରାମ ପୂର୍ଣ୍ଣ କାମ ହେବ ଏହୁ ଦାସୀ ଗୋ ।୪।
ଜୟ ଜୟ ସଖିଚୟ ତୁମ୍ଭ ଶ୍ରୀଚରଣେ
ସୁପବନ ତୀର୍ଥ କ୍ଷେତ୍ର ତହିଁ ମୁଁ ଶରଣେ ଗୋ ।୫।

କୃପାମୟ ରଘୁରାୟ ପାଦପଦ୍ମ ଧୂଳି
ହେବ ପ୍ରାପ୍ତି ଦବାରନି ବସୁଥାଇ ଭାଳି ।୬।
ଜୟ ଭକ୍ତ ଅନୁରକ୍ତ ସାଧୁ ସନ୍ଥଗଣେ
ନିରନ୍ତର କୃପାକର ଏହି ଦୀନ ଜନେ ।୭।
ରାମ ପଦ ଏ ଯେ ଗଦ ପାପ-ବିଷ ନାଶେ
ବୋଲ ରାମ ଗୁଣଧାମ ପରମ ହରଷେ ।୮।
ଜୟ ଜୟ ସାଧୁରାୟ ଜୟ ରାମ ରାମ
ଜୟ ସୀତେ ପତିବ୍ରତେ ଗୁଣ ଅପ୍ରତିମ ହେ ।୯।
ମୋର ତାତ ସୁପଣ୍ଡିତ ମାନଙ୍କ ଅଗ୍ରଣୀ
ତାଙ୍କ ସୁତ ମଧ୍ୟମ ତ ମୁଁ ଅତି ଅଜ୍ଞାନୀ ହେ ।୧୦।
ଗୁଣବତୀ ସ୍ନେହ ଶାନ୍ତି ଦୟାର ଆଧାର
ମାତା ମୋ'ର ଗୋଦାବରୀ ନାମ ତାହାଙ୍କର ହେ ।୧୧।
ପିତା ମାତା ପୁଣି ସୀତା କାନ୍ତ କୃପାବଳେ
ଅସମ୍ଭବ ରାସୋତ୍ସବ ଶ୍ରୀରାମର ହେଲେ ।୧୨।
ହେଲା ଶେଷ ସାଧୁବଂଶ ମୋତେ କ୍ଷମା କର
କଣ୍ଠ ଭରେ ପଦଦେଶେ ମୁଁ ତୁମ୍ଭ କିଙ୍କର ହେ ।୧୩।

**ଶ୍ରୀ ଶ୍ରୀ ଶ୍ରୀ ସୀତାରାମାର୍ପଣ ମସ୍ତୁ ।**

—ସ ମା ପ୍ତ—



ବ୍ରହ୍ମପୁର ଷ୍ଟାର୍ ପ୍ରେସରେ ଶ୍ରୀ ଦାମୋଦର ରଥଙ୍କଦ୍ୱାରା ମୁଦ୍ରିତ ।

# ଶୁଦ୍ଧିପତ୍ର

| ପୃଷ୍ଠା | ଶ୍ଳୋକ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୪ | ୨ | ମୁନିନ୍ଦ୍ର | ମୁନୀନ୍ଦ୍ର |
| ୭ | ୫ | ଶ୍ରୀଗୁରୁବେ | ଶ୍ରୀଗୁରବେ |
| ୯ | ୭ | ନିତ୍ୟତର୍ପ୍ତେ | ନିତ୍ୟତୃପ୍ତେ |
| ୧୩ | ୯ | ମୃତଽସ୍ୟ | ମୃତୋଽସ୍ୟ |
| ୧୮ | ୧ | ତତ୍ୟାଜତାଃ | ତତ୍ୟାଜ ତାଃ |
| ୨୦ | ୪ | କଥୟିଷ୍ୟାମ୍ୟଧୁନାଂ | କଥୟିଷ୍ୟାମ୍ୟଧୁନା |
| ୨୦ | ୪ | ଶୃଣୁତୋଽସ୍ୟ | ଶୁଣ୍ୱତୋଽସ୍ୟ |
| ୨୩ | ୭ | ନମସ୍ତୁତେ | ନମୋସ୍ତୁତେ |
| ୩୯ | ୧୪ | ଧର୍ମ୍ମି | ଧର୍ମ୍ମ |
| ୩୯ | ୧୪ | ପଷ୍ଠ | ପଠଃ |
| ୪୩ | ୧୬ | କୃସୁମେଷୁସ୍ୱବଶାଳ | କୁସୁମେଷୁସ୍ୱବଳାପ |
| ୬୫ | ୨ | ତତଃପରଂ | ଅତଃପରଂ |
| ୧୦୩ | ୨୩ | ବତ୍ମୀହ | ବର୍ତ୍ମୀହ |
| ୧୩୨ | ୧୩ | ଭୂଷ୍ଣି ବ୍ରଜେନ୍ଦ୍ରୋ | ଭୂଷ୍ଣିଂ ବ୍ରଜେନ୍ଦ୍ରୋ |
| ୧୩୪ | ୧୫ | ସହୃତଃ | ସହୃତାଃ |
| ୧୫୨ | ୧୫ | ବକ୍ଷ୍ୟାହଂ | ବକ୍ଷ୍ୟେଽହଂ |
| ୧୫୯ | ୩ | କାଚଗ୍ଲାଯୃତ | କାଚଦ୍ଗ୍ଲାଯୃତ |
| ୧୭୦ | ୧୧ | ମଭକ୍ତ | ମଦ୍ଭକ୍ତ |
| ୧୭୭ | ୩ | ରାମ | ରାମୋ |
| ୧୯୦ | ୦ | ମଦେ | ମନ୍ଦେ |
| ୨୦୯ | — | ସପ୍ତମୋଽଲ୍ଲାସ | ସପ୍ତମଉଲ୍ଲାସଃ |
| ୨୦୯ | — | ଧୀନାର୍ତ୍ତି | ଧୀନାତ୍ତି |

